# ଫ୍ରାନ୍‌ସିସ୍ ବେକନ୍

ଲେଖକ

ଅଧ୍ୟାପକ ଏନ୍. ଦର୍ଜୀ

ଖ୍ରୀଷ୍ଟ ମହାବିଦ୍ୟାଳୟ

କଟକ

୧୯୭୪



ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ
ସଂସ୍ଥା

ଭୁବନେଶ୍ୱର

# FRANCIS BACON

Published by the Orissa State Bureau of Text book Preparation and Production under the centrally sponsored Scheme of Production of books and literature in Regional Languages at the University level of the Government of India in the Ministry of Education and Social Welfare (Department of Culture), New-Delhi.

Written by

*Sri. N. Durzie*

Christ College, Cuttack

First Edition—1974

Published by

ORISSA STATE BUREAU OF TEXT BOOK PREPARATION & PRODUCTION.

Bhubaneswar, Orissa.

Publication No. 109

Printed by;

Janaseva Printing Works
Gopaljew lane
Cuttack-1

Price—Rs 3. 25

# ପ୍ରସ୍ତାବନା

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଓଡ଼ିଆ ଭାଷାରେ ବିଶ୍ୱବିଦ୍ୟାଳୟୋପଯୋଗୀ ପାଠ୍ୟପୁସ୍ତକମାନ ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ସାଧାରଣ ପାଠକପାଠିକାମାନଙ୍କ ନିମନ୍ତେ ମଧ୍ୟ କେତେକ ଉପାଦେୟ ଗ୍ରନ୍ଥର ପ୍ରସ୍ତୁତି ଦାୟିତ୍ୱ ଗ୍ରହଣ କରିଛନ୍ତି । ଦାର୍ଶନିକ ଫ୍ରାନ୍ସିସ୍ ବେକନ୍‌ଙ୍କ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ଦେବା ଉଦ୍ଦେଶ୍ୟରେ ଏହି ପୁସ୍ତକଟି ରଚନା କରାଯାଇଛି । ଖ୍ରୀଷ୍ଟ କଲେଜର ଦର୍ଶନ ଅଧ୍ୟାପକ ଶ୍ରୀ ଏନ୍. ଦର୍ଜୀ ଏହାର ଲେଖକ ଓ ରେଭେନ୍ସା କଲେଜର ଦର୍ଶନ ଅଧ୍ୟାପକ ଶ୍ରୀ ଏ. ମନ୍ନାନ ସମୀକ୍ଷକ । ମୁଁ ଉଭୟଙ୍କୁ ଧନ୍ୟବାଦ ଜ୍ଞାପନ କରୁଛି ।

'ଫ୍ରାନ୍ସିସ୍ ବେକନ୍' ପୁସ୍ତକଟି ସାଧାରଣ ଜିଜ୍ଞାସୁ ପାଠକ-ପାଠିକା, ଛାତ୍ରଛାତ୍ରୀ ତଥା ଶିକ୍ଷକ ସମାଜରେ ଆଦୃତ ହେବ ବୋଲି ଆମର ଆଶା ।

ଭୁବନେଶ୍ୱର
୩୦।୭।୭୪

**ଶ୍ରୀନିବାସ ସାହୁ**
ନିର୍ଦ୍ଦେଶକ

# ପ୍ରାକ୍ କଥନ

ବର୍ତ୍ତମାନ ଧର୍ମ ଓ ଦର୍ଶନର ପରିସର ପରସ୍ପରଠାରୁ ଭିନ୍ନ ବୋଲି ସ୍ପଷ୍ଟତଃ ସ୍ୱୀକୃତ । ଜନସାଧାରଣଙ୍କ ଐହିକ ସୁଖସମୃଦ୍ଧି ସାଧନ ନିମିତ୍ତ ବିଜ୍ଞାନକୁ ବିନିଯୋଗ କରିବା ଆଜିକାଲି ଏକ ସାଧାରଣ ବ୍ୟାପାର । କିନ୍ତୁ ଦିନ ଥିଲା, ଯେତେବେଳେ ଧର୍ମମତର ଆଧିପତ୍ୟରୁ ଦର୍ଶନ ଓ ବିଜ୍ଞାନ ମୁକ୍ତ ହୋଇ ପାରି ନ ଥିଲା । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣଲବ୍ଧ ନିଶ୍ଚିତ ସତ୍ୟ ମଧ୍ୟ ପ୍ରଚଳିତ ଧର୍ମମତର ବିରୁଦ୍ଧ ବିବେଚିତ ହେଲେ ତାହାକୁ ଗ୍ରହଣ କରୁଥିବା ବୈଜ୍ଞାନିକ ଓ ଦାର୍ଶନିକମାନେ ଦଣ୍ଡିତ ହେଉଥିଲେ । ଜନସାଧାରଣଙ୍କ ଜାଗତିକ ସୁଖ ସମୃଦ୍ଧି ସାଧନ ମହତ୍ କାର୍ଯ୍ୟ ବୋଲି ବିବେଚିତ ହେଉ ନ ଥିଲା । ପ୍ରଚଳିତ ଧର୍ମମତକୁ ଦ୍ୱିଧାହୀନ ଭାବେ ଗ୍ରହଣ କରି ତାହାର ସପକ୍ଷରେ ଯୁକ୍ତି ଉପସ୍ଥାପନ କରିବା ହିଁ ଜ୍ଞାନୀ ଓ ଦାର୍ଶନିକମାନଙ୍କ ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରାଯାଉଥିଲା । ଏଭଳି ସମୟରେ ମଧ୍ୟ ଦାର୍ଶନିକ ଫ୍ରାନ୍ସିସ୍ ବେକନ୍ ଆଧୁନିକ ଚିନ୍ତାଧାରାର ପ୍ରବର୍ତ୍ତନ କରି ଜନମତକୁ ପ୍ରଭାବିତ କରିବାକୁ ସମର୍ଥ ହୋଇଥିଲେ । ତଦାନୀନ୍ତନ ଜ୍ଞାନ, ବିଜ୍ଞାନରେ ବେକନ୍ଙ୍କର ଅଗାଧ ପାଣ୍ଡିତ୍ୟ ଥିବା ଯୋଗୁଁ ଏହା ସମ୍ଭବ ହୋଇ ପାରିଥିଲା । ଏବେ ମଧ୍ୟ ବହୁ ବିଷୟରେ ତାଙ୍କର ସୁଚିନ୍ତିତ ମତାମତର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ତେଣୁ ବେକନ୍ଙ୍କର ରଚନାବଳୀ କଦାପି ଉପେକ୍ଷଣୀୟ ହୋଇ ନ ପାରେ ।

ବେକନ୍ଙ୍କର ଗ୍ରନ୍ଥଗୁଡ଼ିକ ଲାଟିନ୍ ଓ ଇଂରାଜୀ ଭାଷାରେ ଲିଖିତ । ତାଙ୍କର ଜୀବନୀ, ଚିଠିପତ୍ର ଓ ରଚନାବଳୀ ଏକାଧିକ ପୁସ୍ତକରେ ପ୍ରକାଶିତ ହୋଇଛି ।

ଏହି କ୍ଷୁଦ୍ର ପୁସ୍ତକର ପରିସର ମଧ୍ୟରେ ତାଙ୍କର ବହୁମୁଖୀ ପ୍ରତିଭାର ସଂପୂର୍ଣ୍ଣ ପ୍ରକଟନ ସମ୍ଭବପର ନୁହେଁ । ବେକନ୍‌ଙ୍କର ଦୋଷ-ଗୁଣ, ବିଜ୍ଞାନ-ଦର୍ଶନର ତତ୍କାଳୀନ ଅବସ୍ଥା ତଥା ତାଙ୍କର ଚିନ୍ତାଧାରାର ବୈଶିଷ୍ଟ୍ୟ ଆଦି ସମ୍ବନ୍ଧରେ ଏଥିରେ ସଂକ୍ଷିପ୍ତ ଆଲୋଚନା ମାତ୍ର ଦିଆ ଯାଇଛି ଏବଂ ଯେପରି ତାହା ଏକଦେଶଦର୍ଶୀ ବା ଅତିରଞ୍ଜନଦୋଷଦୁଷ୍ଟ ନ ହୁଏ, ସେ ଦିଗରେ ଚେଷ୍ଟା କରାଯାଇଛି । ତେଣୁ ଛାତ୍ର ତଥା ସାଧାରଣ ପାଠକମାନଙ୍କୁ ବେକନଙ୍କର ପ୍ରକୃତ ପରିଚୟ ଦେବାରେ ଏହି ପୁସ୍ତକ ସାହାଯ୍ୟ କରିବ ବୋଲି ଆଶା ।

ଅଧ୍ୟାପକ ଏ ମନ୍ନାନଙ୍କର ସୁଚିନ୍ତିତ ସମୀକ୍ଷା ହେତୁ ପୁସ୍ତକଟି ସଂଶୋଧିତ ହୋଇପାରିଛି । ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ନିର୍ଦ୍ଦେଶକ ଡକ୍ଟର ଶ୍ରୀନିବାସ ସାହୁ ମଧ୍ୟ ଏହାର ପାଣ୍ଡୁଲିପି ପାଠକରି ଉପଯୋଗୀ ପରାମର୍ଶ ଦେଇଛନ୍ତି । ଏତଦ୍‌ବ୍ୟତୀତ ଏହି ସଂସ୍ଥାର ଭାଷାବିଶେଷଜ୍ଞ ଡକ୍ଟର ଧନେଶ୍ୱର ମହାପାତ୍ରଙ୍କ ଦ୍ୱାରା ପୁସ୍ତକଟି ଭାଷା ଦୃଷ୍ଟିରୁ ପରିମାର୍ଜିତ ହୋଇପାରିଛି । ଏହି ଅବସରରେ ମୁଁ ଏମାନଙ୍କୁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

**ଲେଖକ**

# ସୂଚୀପତ୍ର


ପ୍ରଥମ ପରିଚ୍ଛେଦ—ଜୀବନୀ ୧-୨୫

ଦ୍ୱିତୀୟ ପରିଚ୍ଛେଦ—ମହତ୍ ନବୀକରଣ ୨୬-୫୦

ତୃତୀୟ ପରିଚ୍ଛେଦ—ବିଜ୍ଞାନର ବିଭାଗୀକରଣ ୫୧-୫୭

ଚତୁର୍ଥ ପରିଚ୍ଛେଦ—ନୂତନ ସାଧନ-ଅନ୍ଧସଂସ୍କାର-ଆରୋହ ପଦ୍ଧତି ୫୮-୮୫

ପଞ୍ଚମ ପରିଚ୍ଛେଦ—ସନ୍ଦର୍ଭ ୮୬-୧୦୯

ଷଷ୍ଠ ପରିଚ୍ଛେଦ—ବେକନ୍‌ଙ୍କ ଦାର୍ଶନିକ ଚିନ୍ତାଧାରାର ବୈଶିଷ୍ଟ୍ୟ ୧୧୦-୧୨୮




## ପ୍ରଥମ ପରିଚ୍ଛେଦ

# ଜୀବନୀ

ଫ୍ରାନସିସ୍ ବେକନ୍ ୧୫୬୧ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସ ୨୨ ତାରିଖରେ ଇଂଲଣ୍ଡର ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ଫ୍ରାନସିସ୍‌ଙ୍କ ପିତା ସାର୍ ନିକୋଲାସ୍ ବେକନ୍ ଦୀର୍ଘ କୋଡ଼ିଏ ବର୍ଷରୁ ଅଧିକ କାଳ ରାଣୀ ଏଲିଜାବେଥଙ୍କ ସିଲ୍‌ରକ୍ଷକ ରୂପେ କାର୍ଯ୍ୟ କରୁଥିଲେ ଏବଂ ସେତେବେଳେ ସେ ଲଣ୍ଡନ ସହରର ଷ୍ଟ୍ରେଣ୍ଡ୍ ଅଞ୍ଚଳର ଏକ ସୁରମ୍ୟ ପ୍ରାସାଦ 'ୟର୍କ ହାଉସ୍'ରେ ଅବସ୍ଥାନ କରୁଥିଲେ । ରାଣୀ ଏଲିଜାବେଥଙ୍କ ପ୍ରଥମ ୨୦ବର୍ଷ ରାଜତ୍ୱ କାଳରେ ବେସାମରିକ ରାଜନୀତିଜ୍ଞ ମାନଙ୍କ ମଧ୍ୟରେ ପ୍ରଧାନମନ୍ତ୍ରୀ ଲର୍ଡ ବରଲେଙ୍କ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ସାର୍ ନିକୋଲାସ୍ ବେକନ୍‌ଙ୍କ ଠାରୁ ଅଧିକ କ୍ଷମତାପନ୍ନ ନ ଥିଲେ । ତାଙ୍କ ପୂର୍ବରୁ କେବଳ ସାମରିକ ବ୍ୟକ୍ତି ଓ ଧର୍ମଯାଜକମାନେ ହିଁ ରାଜ୍ୟର ସର୍ବୋଚ୍ଚ ସ୍ଥାନରେ ଅଧିଷ୍ଠିତ ହେଉଥିଲେ । ଧନର ଅଭିବୃଦ୍ଧି, ଜ୍ଞାନର ପ୍ରଗତି ତଥା ଧର୍ମର ସଂସ୍କାର ହେତୁ ଏହି ପ୍ରଥାର ପରିବର୍ତ୍ତନ ହେବା ଫଳରେ ସର୍ବ ପ୍ରଥମେ ଯେଉଁ କେତେକ ଉଚ୍ଚଶିକ୍ଷିତ, ବୁଦ୍ଧିମାନ ଦେଶଭକ୍ତ ଓ ସୁଯୋଗ୍ୟ

ବ୍ୟକ୍ତି ରାଜନୀତିରେ ଅଂଶ ଗ୍ରହଣ କରିବାର ସୁଯୋଗ ପାଇଥିଲେ, ସେମାନଙ୍କ ମଧ୍ୟରେ ନିକୋଲାସ୍ ବେକନ୍ ହେଉଛନ୍ତି ଅନ୍ୟତମ । ମୃତ୍ୟୁ ପର୍ଯ୍ୟନ୍ତ, ବିଦ୍ୟା, ବୁଦ୍ଧି, ଧନ, ମାନ, ଯଶ, ଗୌରବ ଇତ୍ୟାଦି ସମସ୍ତ କ୍ଷେତ୍ରରେ ତାଙ୍କର ସ୍ଥାନ ଥିଲା ସୁପ୍ରତିଷ୍ଠିତ ।

ଫ୍ରାନସିସ୍‌ଙ୍କ ମାତା ଆନ୍, ସାର୍ ଏନ୍‌ଥୋନି କୁକ୍‌ଙ୍କର କନ୍ୟା ଓ ନିକୋଲାସଙ୍କ ଦ୍ୱିତୀୟ ପତ୍ନୀ ଥିଲେ । ସାର ଏନ୍‌ଥୋନି କୁକ୍ ନିଜେ ଜଣେ ଜ୍ଞାନୀ ବ୍ୟକ୍ତି ବୋଲି ବିବେଚିତ ହେଉଥିଲେ ଏବଂ ୬ଷ୍ଠ ଏଡ୍‌ଉଆର୍ଡଙ୍କ ଶିକ୍ଷକରୂପେ ନିଯୁକ୍ତ ପାଇଥିଲେ । ସେ ନିଜ କନ୍ୟାମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ସମ୍ଭ୍ରାନ୍ତ ଓ ପ୍ରତିପତ୍ତିଶାଳୀ ପରିବାରରେ ବିବାହ ଦେଇଥିଲେ । ତାଙ୍କର କନ୍ୟାମାନଙ୍କ ମଧ୍ୟରୁ ମିଲଡ୍ରେଡ୍ ପ୍ରଧାନମନ୍ତ୍ରୀ ଲର୍ଡ଼ ବରଲେଙ୍କୁ ଏବଂ ଆନ୍, ସାର୍ ନିକୋଲାସ୍ ବେକନ୍‌ଙ୍କୁ ବିବାହ କରିଥିଲେ । ଆନଙ୍କର ଭାଷାତତ୍ତ୍ୱ ଓ ଧର୍ମତତ୍ତ୍ୱରେ ବିଶେଷ ବ୍ୟୁତ୍ପତ୍ତି ଥିଲା ଏବଂ ସେ ଗ୍ରୀକ୍, ରୋମାନ୍, ଲାଟିନ୍ ଇତ୍ୟାଦି ଭାଷା ମାନଙ୍କରେ ପାରଦର୍ଶୀ ଥିଲେ । ବିସପ୍ ଜୁଏଲଙ୍କ ଲିଖିତ ଏପୋଲୋଜିଆ (୧) ଏବଂ ବାର୍ଣ୍ଣାଡ଼ୋ ଓଚିନୋଙ୍କ ଲିଖିତ ଟୁସ୍‌କାନ (୨)ନାମକ ଦୁଇଟି ଧର୍ମ ପୁସ୍ତକର ଅନୁବାଦ କରି ସେ ଇଂଲଣ୍ଡର ଉଚ୍ଚଶିକ୍ଷିତା ନାରୀ-ସମାଜରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

ଏ ପ୍ରକାର ପିତା ମାତାଙ୍କର ତତ୍ତ୍ୱାବଧାନରେ ଫ୍ରାନସିସ୍‌ଙ୍କର ଶୈଶବାବସ୍ଥା ଅତିବାହିତ ହୋଇ ଥିବାରୁ ପ୍ରାଥମିକ ଜୀବନରେ ସେ କୌଣସି ପ୍ରକାର ସୁଖ, ସୁବିଧା, ଶିକ୍ଷା ଓ ସୁଯୋଗରୁ ବଞ୍ଚିତ ହୋଇ ନ ଥିଲେ । ଶାରୀରିକ ଦୁର୍ବଳତା ହେତୁ ସେ କାୟିକ-ଶ୍ରମସାପେକ୍ଷ କର୍ମ ଅପେକ୍ଷା ମାନସିକ ଶ୍ରମ ସାପେକ୍ଷ କର୍ମରେହିଁ ନିଜକୁ ନିୟୋଜିତ ରଖୁଥିଲେ । ବାଲ୍ୟାବସ୍ଥାରୁହିଁ ତାଙ୍କର ବୁଦ୍ଧି ତୀକ୍ଷ୍ଣ ଓ ଗତିବିଧି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଥିଲା । ଏଥିନିମିତ୍ତ ରାଣୀ

---

(୧) Apologia of Bishop Jewel

(୨) Tuscan of Bernardo Ochino.

ଏଲିଜାବେଥ ତାଙ୍କୁ ପରିହାସକରି'ଶିଶୁ ସିଲରକ୍ଷକ ମହାଶୟ !'(୩) ବୋଲି ଅଭିବାଦନ କରୁଥିଲେ । ଅତି ଅଳ୍ପ ବୟସରୁହିଁ ଫ୍ରାନସିସ୍‌ଙ୍କର ଅନୁସନ୍ଧିତ୍ସା ଓ ଆବିଷ୍କାର ମନୋବୃତ୍ତି ସୁସ୍ପଷ୍ଟ ହୋଇ ଯାଇଥିଲା । କଥିତ ଅଛି ଯେ, ସେ ଥରେ ଗୋଟିଏ ପ୍ରତିଧ୍ୱନି ଶୁଣିପାରି ତାହାର ଉତ୍ପତ୍ତିସ୍ଥଳ ଦେଖିବା ଓ ତାହାର ରହସ୍ୟ ଜାଣିବା ଇଚ୍ଛାରେ ତାଙ୍କର କ୍ରୀଡ଼ା ସହଚର ମାନଙ୍କର ଅଗୋଚରରେ ସେଣ୍ଟ୍ ଜେମସ୍ ପ୍ରାନ୍ତରରେ ଥିବା ଗୋଟିଏ ପ୍ରକୋଷ୍ଠରେ ଏକାକୀ ପ୍ରବେଶ କରିଥିଲେ । ତାଙ୍କର ବୟସ ଯେତେବେଳେ ମାତ୍ର ୧୨, ସେତେବେଳେ ସେ ଐନ୍ଦ୍ରଜାଲିକ ବିଦ୍ୟା-ସମ୍ବନ୍ଧୀୟ ଜ୍ଞାନ ଆହରଣ କରି ତାହାକୁ ମାର୍ଜିତ କରିବାରେ ଦକ୍ଷତାର ସୂଚନା ଦେଇଥିଲେ ।

ଫ୍ରାନସିସ ବେକନ୍ ୧୩ ବର୍ଷ ବୟସରେ କେମ୍ବ୍ରିଜର ଟ୍ରିନିଟି କଲେଜରେ ଯୋଗଦାନ କରି ତିନୋଟି ବର୍ଷ ବିଦ୍ୟାଧ୍ୟୟନରେ ଅତିବାହିତ କଲେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ତତ୍କାଳୀନ ପ୍ରଚଳିତ ପାଠ୍ୟକ୍ରମରେ ସେ ଆଦୌ ସନ୍ତୁଷ୍ଟ ନ ଥିଲେ । ଏହି ସମୟରେହିଁ ଆରିଷ୍ଟୋଟଲ୍ (୪) ଓ ତାଙ୍କର ଦର୍ଶନ ପ୍ରତି ଫ୍ରାନସିସ୍‌ଙ୍କର ଘୃଣାଭାବ ଜାତ ହୋଇଥିଲା ଏବଂ ସେ ଅନୁଭବ କରି ପାରିଥିଲେ ଯେ ସେହି ସମୟରେ ଅନୁସୃତ କଳା, ବିଜ୍ଞାନ ଓ ଦର୍ଶନରେ ପ୍ରଭୂତ ପରିବର୍ତ୍ତନ କରିବାର ଆବଶ୍ୟକତା ରହିଛି ।

୧୬ ବର୍ଷ ବୟସରେ ସେ ପ୍ୟାରିସ୍ ଯାତ୍ରା କଲେ । ସେଠାରେ ବ୍ରିଟିଶ ରାଜଦୂତ ସାର ଅମିଆସ୍ ପଲେଟ୍ (୫) ଙ୍କ ତତ୍ତ୍ୱାବଧାନରେ ତାଙ୍କର ଦୁଇବର୍ଷ ଅତିବାହିତ ହେଲା । ସାର୍ ଅମିଆସ୍ ପଲେଟ ଜଣେ ସୁଦକ୍ଷ, ସାଧୁ ଓ ନ୍ୟାୟପରାୟଣ ରାଜମନ୍ତ୍ରୀରୂପେ ସୁଖ୍ୟାତ ଅର୍ଜିଥିଲେ । ତେଣୁ ଫ୍ରାନସିସ୍‌ଙ୍କ ରାଜନୈତିକ ଜୀବନର ପ୍ରସ୍ତୁତିନିମିତ୍ତ ତାଙ୍କୁ ତାଙ୍କର ପିତା

(୩) "Young Lord keeper."

(୪) Aristotle (385 B. C.—322 B. C)

(୫) Sir Amias Paulet, Queen Elizabeth's Minister at the french court.

ପଲେଟଙ୍କ ନିକଟକୁ ହିଁ ପ୍ରେରଣ କରିଥିଲେ । ଫ୍ରାନସରେ ଥିବା ସମୟରେ ଫ୍ରାନସିସଙ୍କ ସାହିତ୍ୟିକ ଓ ବୈଜ୍ଞାନିକ କାର୍ଯ୍ୟକଳାପ ଅବ୍ୟାହତ ଥିଲା, କିନ୍ତୁ ସେ ମୁଖ୍ୟତଃ ପରିସଂଖ୍ୟାନ ଓ କୂଟନୀତି ଶିକ୍ଷାରେ ମନୋନିବେଶ କରିଥିଲେ । ଏହି ସମୟରେ ହିଁ ସେ 'ୟୁରୋପର ଅବସ୍ଥା ସମ୍ବନ୍ଧରେ ଟିପ୍ପଣୀ'(୭)ର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ ଏବଂ ଗୂଢ଼ଲିପିର ରହସ୍ୟଭେଦ କଳା ଆୟତ୍ତ କରି ତହିଁ ସମ୍ବନ୍ଧରେ ଏକ ଅଭିନବ ସୂତ୍ର ଉଦ୍ଭାବନ କରିବାରେ ସମର୍ଥ ହୋଇଥିଲେ । ପରେ ଏ ସବୁ ଲେଖା ତାଙ୍କର ଗ୍ରନ୍ଥାବଳୀରେ ସ୍ଥାନ ପାଇଥିଲା ।

ଫ୍ରାନସରେ ଅବସ୍ଥାନ କାଳରେ ୧୫୮୦ ଖ୍ରୀଷ୍ଟାବ୍ଦ ଫେବୃଆରି ମାସରେ ସେ ପିତାଙ୍କର ଆକସ୍ମିକ ମୃତ୍ୟୁ ଖବର ପାଇ ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କଲେ ।

ନିକୋଲାସ ବେକନ୍ ନିଜର ପ୍ରିୟତମ କନିଷ୍ଠ ପୁତ୍ର ଫ୍ରାନସିସଙ୍କ ନିମିତ୍ତ ଅଳସ୍ର ସମ୍ପତ୍ତି ସଞ୍ଚୟ କରିଥିଲେ ସୁଦ୍ଧା ଯଥାଯଥ ଭାବେ ଉଇଲ କରି ଯାଇ ନ ଥିବାରୁ ଫ୍ରାନସିସ୍ ପିତାଙ୍କର ସମସ୍ତ ସମ୍ପତ୍ତିରୁ ବଞ୍ଚିତ ହେଲେ । ସାହିତ୍ୟ ଓ ରାଜନୀତି ଚର୍ଚ୍ଚା କରିବା ନିମିତ୍ତ ତାଙ୍କର ପ୍ରବଳ ଆଗ୍ରହ ଥିଲା; କିନ୍ତୁ ଆର୍ଥିକ ଅନାଟନ ଏଥିରେ ଅନ୍ତରାୟ ସୃଷ୍ଟି କରୁଥିଲା । ପ୍ରାଚୁର୍ଯ୍ୟ ମଧ୍ୟରେ ଶୈଶବାବସ୍ଥା ଅତିବାହିତ କରି ଯୌବନାବସ୍ଥାରେ ନିଃସ୍ୱ ହୋଇ ନିର୍ଯ୍ୟାତନା ଭୋଗ କଲେ ମନୁଷ୍ୟର ମନୋବଳ ଭାଙ୍ଗିଯାଏ ଓ ଜୀବନର ଲକ୍ଷ୍ୟ ଅପୂର୍ଣ୍ଣ ରହିଯାଏ । କିନ୍ତୁ ଫ୍ରାନସିସ୍ ବେକନ୍ ନିଜର ଭାଗ୍ୟ ବିପର୍ଯ୍ୟୟରେ ହତୋତ୍ସାହ ନ ହୋଇ ସରକାରଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ସରକାରୀ କର୍ମଚାରୀ ରୂପେ କାର୍ଯ୍ୟକରିବା ନିମିତ୍ତ ତାଙ୍କର କୌଣସି ଗୁଣର ଅଭାବ ନ ଥିଲା । ଶିକ୍ଷା, ଦୀକ୍ଷା, ବୁଦ୍ଧି, ଜ୍ଞାନ, ଅଭିଜ୍ଞତା ଓ ପଦ ମର୍ଯ୍ୟାଦାରେ ତାଙ୍କ ବୟସର ଅନ୍ୟ କୌଣସି ଯୁବକଙ୍କ ଠାରୁ ସେ ନ୍ୟୂନ ନ ଥିଲେ । ଶୈଶବାବସ୍ଥାରୁ ରାଣୀଙ୍କ ସହିତ ସେ ସୁପରିଚିତ ଥିଲେ । ତାଙ୍କର ପିତା

(୭) Notes on the state of Europe

ମୃତ୍ୟୁ ପର୍ଯ୍ୟନ୍ତ ଦେଶର ଏକ ଦାୟିତ୍ୱସମ୍ପନ୍ନ କାର୍ଯ୍ୟ ଅତି ଦକ୍ଷତାର ସହିତ ତୁଲାଇଥିଲେ । ତାଙ୍କର ମଉସା ଲର୍ଡ ବର୍‌ଲେ ସିସିଲ୍ ସେତେବେଳେ କୋଷାଧ୍ୟକ୍ଷ ତଥା ପ୍ରଧାନମନ୍ତ୍ରୀ ରୂପେ କାର୍ଯ୍ୟ କରୁଥା'ନ୍ତି । ତଥାପି ଫ୍ରାନସିସ୍ ବେକନ୍ ଜଣେ ରାଜ କର୍ମଚାରୀ ରୂପେ ନିଯୁକ୍ତ ପାଇପାରି ନ ଥିଲେ । ତାଙ୍କର ଅସାଫଲ୍ୟର କାରଣ ନିଜର ଆତ୍ମୀୟମାନଙ୍କର ଅସୂୟା ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ବର୍‌ଲେଙ୍କ ଦ୍ୱିତୀୟପୁତ୍ର ରବର୍ଟ ସିସିଲ୍ ବେକନ୍‌ଙ୍କ ସମବୟସ୍କ ଥିଲେ । ବର୍‌ଲେ ରବର୍ଟଙ୍କୁ ଉପଯୁକ୍ତ ଶିକ୍ଷାଦୀକ୍ଷା ଦେଇ ଆଶା ପୋଷଣ କରିଥିଲେ ଯେ ରବର୍ଟହିଁ ତାଙ୍କ ପରେ ପ୍ରଧାନମନ୍ତ୍ରୀ ହେବା ନିମିତ୍ତ ଉପଯୁକ୍ତ ବିବେଚିତ ହେବେ ଏବଂ ସେହି ଦାୟିତ୍ୱ ବହନ କରିବା ନିମିତ୍ତ ଆହୂତ ହେବେ । କିନ୍ତୁ ବର୍‌ଲେଙ୍କ ସମସ୍ତ ସଯତ୍ନ ଚେଷ୍ଟା ସତ୍ତ୍ୱେ ରବର୍ଟ, ବେକନ୍‌ଙ୍କ ସମକକ୍ଷ ନ ଥିଲେ । ତେଣୁ ବର୍‌ଲେ ନିଜ ପୁତ୍ର ରବର୍ଟଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ ଦେଇ ରାଜନୀତିରେ ପ୍ରବେଶ କରାଇବାକୁ ଯେପରି ବ୍ୟଗ୍ର ଥିଲେ, ବେକନ୍ ରାଜକାର୍ଯ୍ୟ ତଥା ରାଜନୀତିରୁ ଦୂରରେ ରଖିବାକୁ ସେହିପରି ବ୍ୟଗ୍ର ଥିଲେ । ବର୍‌ଲେ ଓ ରବର୍ଟଙ୍କର ବିରାଗଭାଜନ ହେବାପାଇଁ ବେକନ୍ କୌଣସି କାର୍ଯ୍ୟ କରିଥିବେ ବୋଲି ମନେହୁଏ ନାହିଁ । ବେକନଙ୍କର ସ୍ୱଭାବ ଶାନ୍ତ ଓ ବ୍ୟବହାର ଅମାର୍ଜିତ ଥିଲା; ସେ

ସାବଧାନତାର ସହିତ ନିଜର ସ୍ୱାର୍ଥରକ୍ଷା କରିବାକୁ ସତତ ଚେଷ୍ଟିତ ଥିଲେ ଏବଂ ସେଥିପାଇଁ ଶକ୍ତିଶାଳୀ ବ୍ୟକ୍ତିର ଶତ୍ରୁତା ଆଚରଣ କରିବାକୁ ସର୍ବଦା କୁଣ୍ଠିତ ହେଉଥିଲେ । ତେଣୁ ନିଜର ପ୍ରଭାବଶାଳୀ ଆତ୍ମୀୟମାନଙ୍କୁ ଅସନ୍ତୁଷ୍ଟ ବା କ୍ଷୁବ୍ଧ କରିବା ତାଙ୍କର ପ୍ରକୃତି-ବିରୁଦ୍ଧ ଥିଲା । କିନ୍ତୁ ତାଙ୍କର ବିଚକ୍ଷଣତାହିଁ ସେମାନଙ୍କୁ ବିଚଳିତ କରି ତାଙ୍କ ପ୍ରତି ବୈରଭାବ ଜାଗ୍ରତ କଲା ଏବଂ ସେ ହୁଏତ କାଳକ୍ରମେ ରବର୍ଟଙ୍କ ଅପେକ୍ଷା ଅଧିକ କ୍ଷମତାଶାଳୀ ହୋଇଯିବେ ବୋଲି, ସେମାନଙ୍କର ଆଶଙ୍କା ସୃଷ୍ଟି କଲା । ତେଣୁ ତାଙ୍କର ଆତ୍ମୀୟମାନେହିଁ ତାହାଙ୍କୁ ସାହାଯ୍ୟ ସମର୍ଥନ ଦେବା ପରିବର୍ତ୍ତେ ସର୍ବଦା ତାଙ୍କର ଉନ୍ନତି ପଥରେ ବାଧାବିଘ୍ନ ସୃଷ୍ଟି କଲେ ।

ବେକନ୍ କୌଣସି ଉପଯୁକ୍ତ ରାଜକାର୍ଯ୍ୟରେ ନିଯୁକ୍ତ ପାଇ ନ ପାରିବାରୁ ଅନନ୍ୟୋପାୟ ହୋଇ ଆଇନ୍ ବ୍ୟବସାୟୀ ହେବା ଉଦ୍ଦେଶ୍ୟରେ ଗ୍ରେଜ୍‌ଇନରେ ଯୋଗଦାନ କଲେ । ବେକନ୍‌ଙ୍କ ପରି ଜଣେ ଅଧ୍ୟବସାୟୀ ପ୍ରତ୍ୟୁତ୍ପନ୍ନମତି, ବିଚକ୍ଷଣ ଯୁବକଙ୍କ ପକ୍ଷରେ ଜଣେ ଗୁଣବାନ ବାରିଷ୍ଟର ରୂପେ ସ୍ୱୀକୃତି ପାଇବା ସ୍ୱାଭାବିକ । କିନ୍ତୁ ବରଲେ ଏହି ସ୍ୱୀକୃତି ଦେବା ପରିବର୍ତ୍ତେ, ତାହାଙ୍କୁ ଜଣେ ଆଇନ ଅନଭିଜ୍ଞ, ଅପରିପକ୍ୱ ବୁଦ୍ଧି, ଆତ୍ମଶ୍ଳାଘୀ ଉଦ୍ଧତ ଯୁବକ ବୋଲି ମତ ଦେଇ ସମସ୍ତ ସୁଯୋଗରୁ ବଞ୍ଚିତ କରିବାକୁ ଚେଷ୍ଟା କଲେ । ଯାହାହେଉ ବେକନ୍ ୧୫୮୬ ଖ୍ରୀଷ୍ଟାବ୍ଦରେ (ବେଞ୍ଚର) (୭) ଓ ଦୁଇବର୍ଷ ପରେ (ଲେଣ୍ଟ ରିଡ଼ର) (୮) ରୂପେ ନିଯୁକ୍ତ ପାଇଲେ ଏବଂ ପରିଶେଷରେ ୧୫୯୦ ଖ୍ରୀଷ୍ଟାବ୍ଦରେ ରାଣୀଙ୍କର ଅତିରିକ୍ତ ଆଇନ ଉପଦେଷ୍ଟା (୯) ରୂପେ ଶପଥପାଠ କଲେ । ଏହାଦ୍ୱାରା ତାଙ୍କର ପଦମର୍ଯ୍ୟାଦା ବୃଦ୍ଧି ପାଇଲା ସତ, କିନ୍ତୁ ତାଙ୍କର ଇପ୍‌ସିତ ଆର୍ଥିକ ସ୍ୱଚ୍ଛଳତା ସମ୍ଭବ ହେଲାନାହିଁ । ତେଣୁ ସେ ବର୍‌ଲେ ଓ ରବର୍ଟଙ୍କ ସମସ୍ତ ଅଯୌକ୍ତିକ ମତାମତ ଓ ଅନ୍ୟାୟ ଆଚରଣ ସତ୍ତ୍ୱେ ସେମାନଙ୍କର ସାହାଯ୍ୟ ଭିକ୍ଷା କରିବାକୁ ବିରତ ହେଲେନାହିଁ ଏବଂ ବହୁଦିନ ପରେ ସେମାନଙ୍କ ସାହାଯ୍ୟରେ ଲାଭପ୍ରଦ ଷ୍ଟାର ଚେମ୍ବରର ରେଜିଷ୍ଟ୍ରାର (୧୦) କାର୍ଯ୍ୟ ପାଇଲେ ।

୧୫୯୩ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟରେ ବେକନ୍ ମିଡ଼ଲ୍ ଏସେକ୍‌ସ ପ୍ରଦେଶର ପ୍ରତିନିଧି ରୂପେ ଯୋଗଦାନ କଲେ ଏବଂ ଜଣେ ପ୍ରତିଭା ସମ୍ପନ୍ନ ଆଲୋଚକ ଭାବେ ଖ୍ୟାତି ଅର୍ଜନ କଲେ । ବେକନ୍ ନିଜର ଅସାଧାରଣ ଶକ୍ତି ସାମର୍ଥ୍ୟ ଉପରେ ଅତ୍ୟାବାନ ହୋଇ ରାଜନୀତି କ୍ଷେତ୍ରରେ ସରକାରଙ୍କ ପ୍ରିୟପାତ୍ର ଓ ଜନ ସାଧାରଣଙ୍କ ସ୍ୱାର୍ଥ ରକ୍ଷକ

(୭) Bencher
(୮) Lent Reader
(୯) Queen's Counsel Extra ordinary
(୧୦) Registrar of Star-chamber

ରୂପେ ବିବେଚିତ ହେବା ନିମିତ୍ତ ଚେଷ୍ଟା କଲେ । କିନ୍ତୁ ଏହାର ପରିଣତି ତାଙ୍କ ନିଜର ସ୍ୱାର୍ଥ ଦୃଷ୍ଟିରୁ ଅତ୍ୟନ୍ତ କ୍ଷତିକାରକ ହେଲା । ଯେତେ ଯଥାର୍ଥ ହେଲେ ସୁଦ୍ଧା ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ଶାସକଙ୍କ ସ୍ୱାର୍ଥର କ୍ଷତିକାରକ କୌଣସି କାର୍ଯ୍ୟ କରିବା ଇଂଲଣ୍ଡର ତତ୍କାଳୀନ ରାଜତନ୍ତ୍ରରେ ଅତ୍ୟନ୍ତ ବିପଜ୍ଜନକ ହେଉଥିଲା । ତେଣୁ ପ୍ରଜାମାନଙ୍କ ଠାରୁ ଅତି ଅଳ୍ପ ସମୟ ମଧ୍ୟରେ ପ୍ରଭୂତ ଅର୍ଥ ସଂଗ୍ରହ କରିବାର ଏକ ସରକାରୀ ଯୋଜନା ବିରୁଦ୍ଧରେ ପାର୍ଲିଆମେଣ୍ଟରେ ସ୍ୱର ଉତ୍ତୋଳନ କରି ବେକନ୍, ରାଣୀ ଏବଂ ତାଙ୍କ ମନ୍ତ୍ରୀମାନଙ୍କର ବିରାଗଭାଜନ ହୋଇ ପଡ଼ିଲେ । ବେକନ୍ ସଙ୍ଗେ ସଙ୍ଗେ ଏହାର ପରିଣତି ଉପଲବ୍ଧି କରି ରାଣୀ ଓ ତାଙ୍କ ମନ୍ତ୍ରୀମାନଙ୍କ ଠାରେ ଅତି ବିନୀତ ଭାବରେ କ୍ଷମା ପ୍ରାର୍ଥନା କଲେ ଏବଂ ଜୀବଦ୍ଦଶାରେ କେବେ ସେ ଏପ୍ରକାର କାର୍ଯ୍ୟର ପୁନରାବୃତ୍ତି କରି ନ ଥିଲେ ।

ଏଲିଜାବେଥଙ୍କ ଦରବାରରେ ସେତେବେଳେ ଜଣେ ଧନୀ, ସାହାସୀ ସ୍ପଷ୍ଟବାଦୀ, ବନ୍ଧୁ ସ୍ନେହୀ ଓ ଗୁଣଗ୍ରାହୀ ଯୁବକ ନୂତନ ଭାବେ ଯୋଗଦାନ କରିଥାନ୍ତି । ସେ ହେଉଛନ୍ତି ଏସେକ୍ସର ଆର୍ଲ ରବର୍ଟ (୧୧) ଅଳ୍ପ ସମୟ ମଧ୍ୟରେହିଁ ସେ ରାଣୀଙ୍କର ସର୍ବାପେକ୍ଷା ଅଧିକ ପ୍ରିୟପାତ୍ର ହୋଇ ପାରିଥିଲେ ଏବଂ ତାହାଙ୍କର ପ୍ରତିଭା ଓ ପ୍ରତିପତ୍ତି ପୁତ୍ରବତ୍ସଳ, ପ୍ରବୀଣ ରାଜନୀତିଜ୍ଞ ବରଲେ ସିସିଲ୍ ଏବଂ ତାଙ୍କ ପୁତ୍ର ରବର୍ଟ ସିସିଲଙ୍କୁ ବିଚଳିତ କରିଦେଇଥିଲା । ବେକନ୍ ଦୀର୍ଘ ବାରବର୍ଷ କାଳ ଅକ୍ଲାନ୍ତ ପ୍ରୟାସ କରି ନିଜର ଆତ୍ମୀୟ ସିସିଲ ମାନଙ୍କଠାରୁ କୌଣସି ବିଶେଷ ସୁବିଧା ସୁଯୋଗ ଲାଭକରି ନ ପାରି ଶେଷରେ ଏହି ଏସେକ୍ସର ଆର୍ଲଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ । ଏସେକ୍ସ ବିଦ୍ୟାନୁରାଗୀ, କଳାପ୍ରେମୀ ଓ ସାହିତ୍ୟିକତାର ପ୍ରତୀକ ଥିଲେ । ତେଣୁ ସେ ଯେପରି ବେକନଙ୍କ ଗୁଣମୁଗ୍ଧ ହେବା ସ୍ୱାଭାବିକ, ବେକନ୍ ମଧ୍ୟ ସେହିପରି ତାହାଙ୍କର ପୃଷ୍ଠପୋଷକତାରେ ନିଜର ଅଭୀଷ୍ଟ ସାଧନ କରିବାର ଆଶା ପୋଷଣ କରିବା ସ୍ୱାଭାବିକ ।

---

(୧୧) Robert Devereax, Earl of Essex

୧୫୯୪ ଖ୍ରୀଷ୍ଟାବ୍ଦରେ ଆଟର୍ଣ୍ଣି ଜେନେରାଲ (୧୨) ପଦରେ ଜଣେ ନୂତନ ବ୍ୟକ୍ତିଙ୍କୁ ନିଯୁକ୍ତ ଦେବାର ଆବଶ୍ୟକତା ପଡ଼ିଲା । ବେକନ୍‌ଙ୍କୁ ଏହି ପଦରେ ନିଯୁକ୍ତ ଦେବା ନିମିତ୍ତ ଏସେକ୍ସ ପ୍ରାଣପଣେ ଲାଗିପଡ଼ିଲେ । ଏଥିପାଇଁ ସିସିଲ୍‌ମାନଙ୍କ ଅନୁକୂଳ ହେବାକୁ ମଧ୍ୟ ସେ ପଶ୍ଚାତପଦ ହେଲେ ନାହିଁ; କିନ୍ତୁ ବେକନ୍‌ଙ୍କ ତରୁଣତା ତଥା ଅଭିଜ୍ଞତାର ଅପରିପକ୍ୱତା କାରଣ ଦର୍ଶାଇ ସେ ଏହି ପଦ ନିମିତ୍ତ ଅନୁପଯୁକ୍ତ ବୋଲି ପ୍ରଧାନମନ୍ତ୍ରୀ ବର୍ଲେ ମତ ଦେଲେ ଏବଂ ବେକନ୍ ଏହି ନିଯୁକ୍ତ ପାଇପାରିଲେ ନାହିଁ । ଏସେକ୍ସ ଏଥିରେ ସଫଳକାମ ନ ହେବାରୁ ସଲିସିଟର ଜେନେରାଲ୍ (୧୩) ପଦ ପାଇଁ ବେକନଙ୍କର ପାର୍ଥିତ୍ୱର ଦୃଢ଼ ସମର୍ଥନ ଜଣାଇଲେ । ବର୍ଷାଧିକ କାଳ ଏହି ନିଯୁକ୍ତ ସମ୍ବନ୍ଧରେ ବିସ୍ତର ଆଲୋଚନା ଚାଲିଲା; କିନ୍ତୁ ଏସେକ୍ସଙ୍କର ଆପ୍ରାଣ-ଚେଷ୍ଟା ସତ୍ତ୍ୱେ ବେକନ ଏହି ନିଯୁକ୍ତ ମଧ୍ୟ ପାଇପାରିଲେ ନାହିଁ । ଏହି ଅସାଫଲ୍ୟରେ ଅତ୍ୟନ୍ତ କ୍ଷୁବ୍ଧ ହୋଇ ବନ୍ଧୁବତ୍ସଳ ଏସେକ୍ସ ଟୁଇକେନହାମରେ ଥିବା ୨,୦୦୦ ପାଉଣ୍ଡ ମୂଲ୍ୟର ତାଙ୍କର ଏକ ଜମିଦାରୀ ବେକନଙ୍କୁ ପ୍ରଦାନ କଲେ । ଉଦାର ହୃଦୟ ଏସେକ୍ସଙ୍କର ବେକନ୍‌ଙ୍କ ସହିତ ବନ୍ଧୁତାର ଏହା ଏକ ମର୍ମସ୍ପର୍ଶୀ ନିଦର୍ଶନ ।

ସମସ୍ତ ବାଧାବିଘ୍ନ ସତ୍ତ୍ୱେ ବେକନ୍ ଇତିମଧ୍ୟରେ ତାଙ୍କର ସାହିତ୍ୟ ଚର୍ଚ୍ଚା ଅବ୍ୟାହତ ରଖିଥିଲେ ଓ ୧୫୯୭ ଖ୍ରୀଷ୍ଟାବ୍ଦରେ ତାଙ୍କର କେତେଗୁଡ଼ିଏ ଉଚ୍ଚକୋଟିର ନିବନ୍ଧ—ସମ୍ବଳିତ ପ୍ରଥମ ପୁସ୍ତକ 'ସନ୍ଦର୍ଭ' (୧୪) ପ୍ରକାଶିତ ହେଲା । ଏହି ପୁସ୍ତକ ଶିକ୍ଷିତ ଜନ ସମାଜରେ ସମାଦୃତ ହେଲା ଏବଂ ଅଳ୍ପ କେତେମାସ ମଧ୍ୟରେ ହିଁ ଏହାର ଦ୍ୱିତୀୟ ସଂସ୍କରଣର ଆବଶ୍ୟକତା ପଡ଼ିଲା । 'ସନ୍ଦର୍ଭ' ପୁସ୍ତକଟି ଲାଟିନ୍, ଫରାସୀ ଓ ଇଟାଲୀୟ ଭାଷାରେ ଅନୂଦିତ ହେଲା ଏବଂ ବେକନ୍ ପ୍ରଥମ ପ୍ରୟାସରେ ହିଁ ଜଣେ ସାହିତ୍ୟିକ ହିସାବରେ ପ୍ରତିଷ୍ଠା

(୧୨) Attorney-General
(୧୩) Solicitor-General
(୧୪) Essays

ଲାଭ କଲେ । କିନ୍ତୁ ଲେଖକ ହିସାବରେ ବେକନ୍‌ଙ୍କର ସୁଖ୍ୟାତିର ପ୍ରସାର ଘଟିଥିଲେ ହେଁ ତାଙ୍କର ଆର୍ଥିକ ଦୁର୍ଗତିର ବିଶେଷ କୌଣସି ପରିବର୍ତ୍ତନ ହୋଇନଥିଲା । କଥିତ ଅଛି ଯେ, ଏହି ସମୟରେ ଜଣେ ସ୍ୱର୍ଣ୍ଣକାର ଠାରୁ ତିନିଶତ ପାଉଣ୍ଡ ଋଣ ଆଣି ସେ ଫେରାଇ ନ ପାରିବାରୁ ତାହାଙ୍କୁ ସର୍ବସାଧାରଣ ରାସ୍ତାରେ ବନ୍ଦୀକରି କୋଲମନ୍ ଷ୍ଟ୍ରୀଟର ଏକ ନ୍ୟାୟାଳୟକୁ ନିଆଯାଇଥିଲା ।

ଆର୍ଥିକ ଅନାଟନରୁ ଅବ୍ୟାହତି ପାଇବା ପାଇଁ ହେଟନ୍ ନାମ୍ନୀ ଏକ ବିତ୍ତଶାଳିନୀ ବିଧବାଙ୍କୁ ବିବାହ କରିବାପାଇଁ ବେକନ୍ ଚେଷ୍ଟାକଲେ । ଏହି କାର୍ଯ୍ୟରେ ମଧ୍ୟ ଏସେକ୍ସ ତାହାଙ୍କୁ ସମ୍ମାନ୍ତ କରଣରେ ସାହାଯ୍ୟ କଲେ ଏବଂ ହେଟନ୍‌ଙ୍କ ମାତାଙ୍କୁ ନିଜ ବନ୍ଧୁଙ୍କ ସପକ୍ଷରେ ଲେଖିଥିଲେ ଯେ ଯଦି ହେଟନ ତାଙ୍କ ନିଜର କନ୍ୟା ବା ଭଗ୍ନୀ ହୋଇଥାନ୍ତେ ତେବେ ସେ ଫ୍ରାନସିସ୍‌ଙ୍କୁହିଁ ତାହାଙ୍କୁ ଅର୍ପଣ କରିଥାନ୍ତେ । କିନ୍ତୁ ବେକନ୍ ଓ ଏସେକ୍ସଙ୍କ ଏହି ଚେଷ୍ଟା ମଧ୍ୟ ଫଳବତୀ ହେଲାନାହିଁ । ଯାହାହେଉ, ଏହି କାର୍ଯ୍ୟ ତଥା ବେକନଙ୍କୁ ସାହାଯ୍ୟ କରିବା ନିମିତ୍ତ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟରେ ଏସେକ୍ସଙ୍କ ଉଦ୍ୟୋଗ, ଆନ୍ତରିକତା ଓ ସହୃଦୟତାର ଅଭାବ ନ ଥିଲା ।

ଏହାପରେ ଏସେକ୍ସଙ୍କ ଭାଗ୍ୟ ବିପର୍ଯ୍ୟୟ ସମୟ ଆସିଲା । ୧୫୯୬ ଖ୍ରୀଷ୍ଟାବ୍ଦରେ ସେ କେଡ଼ିଜରୁ ବିଜୟ-ଗୌରବରେ ମଣ୍ଡିତ ହୋଇ ଫେରିଥିଲେ ଏବଂ ସ୍ୱଦେଶ ବିଦେଶ ସର୍ବତ୍ର ଜନସାଧାରଣଙ୍କ ମୁଖରେ ତାଙ୍କର ପ୍ରଶଂସାର ଗାଥା ଶୁଣାଗଲା । କିନ୍ତୁ ତାଙ୍କର ସ୍ୱେଚ୍ଛାଚାରିତା ତଥା ଅସହିଷ୍ଣୁତା ହେତୁରୁ ସେ ରାଣୀ ତଥା ଅନ୍ୟାନ୍ୟ ଉଚ୍ଚପଦସ୍ଥ କର୍ମଚାରୀଙ୍କ ଅପ୍ରିୟ ହୋଇ ପଡ଼ିଥିଲେ । ଏହା ବ୍ୟତୀତ ସେ ଆୟର୍ଲାଣ୍ଡର ଶାସକ ରୂପେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ ଏବଂ ତାଙ୍କର କାର୍ଯ୍ୟକଳାପ ସନ୍ଦେହପୂର୍ଣ୍ଣ, ଓ ଦୋଷାବହ ବୋଲି ବିବେଚିତ ହେଲା । ଏସେକ୍ସ ଅଭିଯୁକ୍ତ ହେଲେ ଏବଂ ନ୍ୟାୟାଳୟରେ ତାଙ୍କର ବିଚାର ହେଲା ।

ବେକନ, ପ୍ରଥମେ ରାଣୀ ଏବଂ ଏସେକ୍‌ସଙ୍କ ମଧ୍ୟରେ ଉପୁଜିଥିବା ମନୋମାଳିନ୍ୟର ଏକ ସମାଧାନ ପାଇଁ ଚେଷ୍ଟା କଲେ । କିନ୍ତୁ ରାଣୀ ତାହାଙ୍କୁ ଏସେକ୍‌ସଙ୍କ ଜଣେ ଅନ୍ଧ ସମର୍ଥକ ବୋଲି ସନ୍ଦେହ କରୁଥିବା ସ୍ଥଳେ ଏସେକ୍‌ସ ତାଙ୍କଠାରେ ସହାନୁଭୂତିଶୀଳ ବନ୍ଧୁତାର ଅଭାବ ରହିଛି ବୋଲି ମନେ କଲେ । ବେକନ୍ ଏହି ଜଟିଳ ପରିସ୍ଥିତିରେ ଏସେକ୍‌ସଙ୍କୁ ସମର୍ଥନ କରିବା ଦ୍ୱାରା ନିଜେ ବିପଦଗ୍ରସ୍ତ ହେବେ ବୋଲି ଆଶଙ୍କା କରି ଏବଂ ଏସେକ୍‌ସଙ୍କ ଆଶୁ ପତନ ସୁନିଶ୍ଚିତ ବୋଲି ଅନୁଭବ କରି ରାଣୀଙ୍କୁ ନିଜର ଆନୁଗତ୍ୟର ପ୍ରମାଣ ଦେବା ନିମିତ୍ତ ଏସେକ୍‌ସଙ୍କ ବିପକ୍ଷରେ ଏଡ୍‌ଭୋକେଟ ରୂପେ ଅବତୀର୍ଣ୍ଣ ହେଲେ ।

ସ୍ପଷ୍ଟତଃ କହିବାକୁ ଗଲେ ବେକନ୍‌ଙ୍କ ଏ ପ୍ରକାର ବ୍ୟବହାରକୁ ନୈତିକତା ଦୃଷ୍ଟିରୁ କୌଣସିମତେ ସମର୍ଥନ କରାଯାଇ ନ ପାରେ । ଏସେକ୍‌ସ ପରମ ବନ୍ଧୁ ମନେକରି ତାହାଙ୍କ ଠାରୁ କୌଣସି ବିଷୟ ଗୋପନ ରଖି ନ ଥିଲେ । ସେ ତାଙ୍କର ବିପଦରେ ବେକନ୍‌ଙ୍କ ଠାରୁହିଁ ଉପଯୁକ୍ତ ଉପଦେଶ ଓ ସମସ୍ତ ପ୍ରକାର ସାହାଯ୍ୟ ସମର୍ଥନ ଆଶା କରିବା ସ୍ୱାଭାବିକ । ଜଣେ ଉତ୍କୃଷ୍ଟ ବନ୍ଧୁ ନିଜର ଜୀବନକୁ ବିପନ୍ନ କରିସୁଦ୍ଧା ବନ୍ଧୁକୁ ବିପଦରୁ ରକ୍ଷା କରିବାକୁ ଚେଷ୍ଟା କରିବା କଥା । ଜଣେ ସାଧାରଣ ବନ୍ଧୁ ମଧ୍ୟ ବନ୍ଧୁକୁ ଅଧିକତର ବିପଦ ମଧ୍ୟକୁ ଠେଲିଦେବା ଅନୁଚିତ । କିନ୍ତୁ ବେକନ୍ ଏସେକ୍‌ସଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବା ଦୂରେଥାଉ, ସେ ଯେପରି ପ୍ରାଣଦଣ୍ଡରେ ଦଣ୍ଡିତ ହୁଅନ୍ତି, ସେଥିପାଇଁ ମଧ୍ୟ ଚେଷ୍ଟା କରିଥିଲେ ବୋଲି ସନ୍ଦେହ କରିବାର ଯଥେଷ୍ଟ ଅବକାଶ ରହିଛି । ଅବଶ୍ୟ ଏସେକ୍‌ସ ନିଜ ଦୋଷରୁହିଁ କାରାଦଣ୍ଡ ଭୋଗକରି ଥାନ୍ତେ ଏବଂ ବେକନ୍ କୌଣସି ପ୍ରକାରେ ତାହାଙ୍କୁ ଏଥିରୁ ଉଦ୍ଧାରକରି ପାରି ନଥାନ୍ତେ । କିନ୍ତୁ ସେ ନିଜର ସ୍ୱାର୍ଥକୁ ଭ୍ରୁକ୍ଷେପ ନକରି ଚେଷ୍ଟା କରିଥିଲେ ତାହାଙ୍କୁ ସେ ପ୍ରାଣଦଣ୍ଡରୁ ରକ୍ଷାକରି ପାରିଥାନ୍ତେ, ଏଥିରେ ସନ୍ଦେହ ନାହିଁ । ଅନ୍ତତଃ ଏସେକ୍‌ସଙ୍କ ବିରୁଦ୍ଧରେ ଅକାଟ୍ୟ ଯୁକ୍ତି ପ୍ରଦର୍ଶନ କରିବାରୁ ସେ ବିରତ ରହିଥିଲେ ମଧ୍ୟ ହୁଏତ ଏସେକ୍‌ସଙ୍କ ପ୍ରାଣରକ୍ଷା ହୋଇପାରିଥାନ୍ତା । କିନ୍ତୁ ବେକନ୍‌ହିଁ

ନିଜର ପରମ ବନ୍ଧୁଙ୍କୁ ପ୍ରାଣଦଣ୍ଡ ଦିଆଇବାରେ ସମସ୍ତ ପ୍ରକାର ସଯତ୍ନ ଚେଷ୍ଟାକରିଥିଲେ ବୋଲି କହିଲେ ଅଯୁକ୍ତ ହେବନାହିଁ ।

ଦୋଷ ତୁଳନାରେ ଏସେକ୍ସଙ୍କ ଦଣ୍ଡ ଅତ୍ୟଧିକ ହୋଇଗଲା ବୋଲି କେତେକ ମହଲରେ ମତ ପ୍ରକାଶ ପାଇଲା । ଏହି ମତକୁ ଖଣ୍ଡନ କରିବା ଉଦ୍ଦେଶ୍ୟରେ ପୁଣି ବେକନ୍ ରାଣୀଙ୍କ ନିର୍ଦ୍ଦେଶରେ ଏସେକ୍ସ ରାଜଦ୍ରୋହ କାର୍ଯ୍ୟରେ ଲିପ୍ତ ଥିଲେ ବୋଲି ପ୍ରମାଣ କରିବାକୁ ତଥ୍ୟ ଓ ଯୁକ୍ତି ସଂବଳିତ ଗୋଟିଏ ଲେଖା ପ୍ରକାଶ କଲେ ।

ବେକନ୍‌ଙ୍କର ଏହିସବୁ ମିତ୍ରଦ୍ରୋହୀ କାର୍ଯ୍ୟ ଗୋଟିଏ ମାତ୍ର ଉଦ୍ଦେଶ୍ୟ ସାଧନ ନିମିତ୍ତ କରାଯାଇ ଥିଲା ବୋଲି ମନେହୁଏ । ତାହା ହେଉଛି ରାଣୀଙ୍କ ମନରୁ ତାଙ୍କପ୍ରତି ଥିବା ସମସ୍ତ ସନ୍ଦେହ ଦୂର କରି ତାଙ୍କର ସଂପୂର୍ଣ୍ଣ ଆନୁଗତ୍ୟର ପ୍ରମାଣ ଦେବା ଏବଂ ତଦ୍ଦ୍ୱାରା ନିଜର ଆସନ ସୁଦୃଢ଼ ରଖି ଉତ୍ତରୋତ୍ତର ଶ୍ରୀବୃଦ୍ଧିର ପଥ ସୁଗମ କରିବା । ବେକନ୍ ଏଥି ନିମିତ୍ତ ନିଜର ଶୁଭାକାଂକ୍ଷୀ ପରମବନ୍ଧୁଙ୍କୁ ବଳି ଦେବାକୁ ମଧ୍ୟ ପଶ୍ଚାତପଦ ହୋଇ ନ ଥିଲେ, କିନ୍ତୁ ଏତଦ୍ଦ୍ୱାରା ସେ ଲାଭବାନ ହୋଇଥିଲେ ବୋଲି ମନେ ହୁଏ ନାହିଁ । ଜନସାଧାରଣରେ ତାହାଙ୍କ ଗର୍ହିତ ଅପକର୍ମର କୁତ୍ସା ରଟନା ଶୁଣାଗଲା ଏବଂ ଏସେକ୍ସଙ୍କ ପତନ ହେତୁ ରାଣୀ ମଧ୍ୟ ପରେ ମ୍ରିୟମାଣ ହୋଇ ପଡ଼ିଲେ ।

ଏଲିଜାବେଥ୍‌ଙ୍କ ମୃତ୍ୟୁପରେ ଜେମସ୍ ଇଂଲଣ୍ଡ ରାଜ ସିଂହାସନରେ ଅଧିଷ୍ଠିତ ହେଲେ ଏବଂ ବେକନ୍ ନିଜକୁ ସୁପ୍ରତିଷ୍ଠିତ କରିବାର ପ୍ରଯତ୍ନ ଅବ୍ୟାହତ ରଖିଲେ । ଜେମସ୍‌ଙ୍କ ଆମଳରେ ଆରମ୍ଭରୁ ତାଙ୍କର ଭବିଷ୍ୟତ ଉଜ୍ଜଳ ଓ ଆଶା-ଆକାଂକ୍ଷା ପୂର୍ଣ୍ଣ ହେବାର ସୂଚନା ସେ ସ୍ପଷ୍ଟ ଦେଖି ପାରି ଥିଲେ । କାରଣ ଜେମସ୍‌ଙ୍କ ଅନେକ ଦୋଷ-ତ୍ରୁଟି ଥିଲେ ମଧ୍ୟ ସେ ନିଜେ ଜ୍ଞାନୀ ଥିଲେ ଏବଂ ପଣ୍ଡିତ ଓ ଚତୁର ବ୍ୟକ୍ତିମାନଙ୍କୁ ସମାଦର କରୁଥିଲେ ।

ଜେମସ୍‌ଙ୍କ ଅଭିଷେକ ଉତ୍ସବରେ ଶତାଧିକ ବ୍ୟକ୍ତିଙ୍କୁ ନାଇଟ୍ (୧୫) କରାଯାଇ 'ସାର୍' ଉପାଧିରେ ଭୂଷିତ କରାଯାଇଥିଲା । ବେକନ୍ ସେମାନଙ୍କ ମଧ୍ୟରେ ଅନ୍ୟତମ । ଏହାପରେ ସେ ଏଲଡ଼ରମେନ୍ ବାର୍ଣ୍ଣହାମଙ୍କ କନ୍ୟାଙ୍କୁ ବିବାହ କଲେ ।

ଜେମସ୍‌ଙ୍କ ରାଜତ୍ୱର ପ୍ରଥମ କେତୋଟି ବର୍ଷ ବେକନ୍ ତାଙ୍କର ଏସେକ୍‌ସଙ୍କ ପ୍ରତି ବ୍ୟବହାର ଯୋଗୁଁ ପଶ୍ଚାତ୍ତାପ ଓ କ୍ଷମାଭିକ୍ଷା କରି କଟାଇ ଥିଲେ । ଲର୍ଡ଼ ଏସେକ୍‌ସଙ୍କୁ ରାଜା ଜେମସ ଭଲ ପାଉଥିଲେ ଏବଂ ତାଙ୍କର ସହଯୋଗୀ ବନ୍ଧୁ ଲର୍ଡ଼ ସାଉଥେମ୍‌ଟନ୍ (୧୬) ଙ୍କୁ କାରାମୁକ୍ତ କରିଦେଇ ଥିଲେ । ସାଉଥେମ୍‌ଟନ୍ ଶେଷ ପର୍ଯ୍ୟନ୍ତ ଏସେକ୍‌ସଙ୍କୁ ପରିତ୍ୟାଗ ନ କରି କାରାବରଣ କରିଥିବାରୁ ଜନସାଧାରଣଙ୍କ ଯେପରି ପ୍ରଶଂସାଭାଜନ ହୋଇଥିଲେ, ବେକନ୍ ଏସେକ୍‌ସଙ୍କ ପ୍ରତି ବିଶ୍ୱାସଘାତକତା କରି ଥିବାରୁ ସେହିପରି ସେମାନଙ୍କ ନିନ୍ଦାଭାଜନ ହୋଇ ପଡ଼ିଥିଲେ । କିନ୍ତୁ ବେକନ୍‌ଙ୍କ ବନ୍ଧୁତା ବା ଶତ୍ରୁତା କୌଣସିଟି ଗଭୀର ନ ଥିଲା । ସେ କୌଣସି ବନ୍ଧୁ ନିମିତ୍ତ ଯେପରି ନିଜର ସ୍ୱାର୍ଥକୁ ଜଳାଞ୍ଜଳୀ ଦେଇପାରୁ ନ ଥିଲେ, କୌଣସି ଶତ୍ରୁ ନିମିତ୍ତ ସେହିପରି ପ୍ରତିଶୋଧର ବ୍ୟବସ୍ଥା ମଧ୍ୟ କରୁ ନ ଥିଲେ । ତାଙ୍କର ଜ୍ଞାନରେ କାହାରି ସନ୍ଦେହ ନ ଥିଲା, ବ୍ୟବହାରରେ କାହାରି ଆପତ୍ତି ନ ଥିଲା ଏବଂ ବିଶେଷତଃ ତାଙ୍କର ସାମାନ୍ୟତମ ଦୋଷ ନିମିତ୍ତ କ୍ଷମାଭିକ୍ଷା କରିବାକୁ ସେ ଅତି ଶୀଘ୍ର ପଶ୍ଚାତ୍‌ପଦ ହେଉ ନ ଥିଲେ । ତେଣୁ କାଳକ୍ରମେ ବେକନ୍‌ଙ୍କ ପ୍ରତି ସାଧାରଣ ଘୃଣାଭାବ ଲୋକଙ୍କ ମନରୁ ଅପସାରିତ ହୋଇ ଗଲା ।

ଜେମସ୍‌ଙ୍କ ଅମଳରେ ବେକନ୍‌ଙ୍କ ସୌଭାଗ୍ୟ ଓ ସୁଦିନର ଉତ୍ତରୋତ୍ତର ବୃଦ୍ଧି ଘଟିଲା । ୧୬୦୪ ରେ ସେ ରାଜାଙ୍କର ଉପଦେଷ୍ଟା (୧୭)

(୧୫) Knight

(୧୬) Henry Wriothesley, Earl of southampton ;

(୧୭) King's Counsel

ସ୍ୱବେ ନିଯୁକ୍ତ ପାଇଲେ । ତାହାଙ୍କୁ ୧୬୦୭ ରେ ସଲିସିଟର ଜେନେରାଲ ଏବଂ ୧୬୧୨ରେ ଆଟର୍ଣ୍ଣି ଜେନେରାଲ ପଦକୁ ଉନ୍ନୀତ କରାଗଲା । ରାଜା ଜେମସ୍ ଇଂଲଣ୍ଡ ଓ ସ୍କଟଲଣ୍ଡର ମିଶ୍ରଣ ନିମିତ୍ତ ଅତ୍ୟନ୍ତ ଆଗ୍ରହୀ ଥିଲେ । ଏହି ପ୍ରସ୍ତାବ ସପକ୍ଷରେ ପାର୍ଲିଆମେଣ୍ଟରେ ଅନେକ ଅକାଟ୍ୟ ଯୁକ୍ତି ଉପସ୍ଥାପନ କରି ବେକନ୍ ରାଜାଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇ ପାରିଥିଲେ । ଏକ୍ସଚେକର ଚେମ୍ବରର ପୋଷ୍ଟନାଟି (୧୮) ବ୍ୟାପାରରେ ମଧ୍ୟ ତାଙ୍କ କୃତିତ୍ୱ ପ୍ରଶଂସିତ କରାହୋଇ ଥିଲା ।

ବେକନ୍ଙ୍କର ଅଧିକାଂଶ ସମୟ ପାର୍ଲିଆମେଣ୍ଟ ଓ ବିଚାରାଳୟରେ ଅତିବାହିତ ହେଉଥିଲେ ମଧ୍ୟ ଅବସର ସମୟରେ ସାହିତ୍ୟ, ବିଜ୍ଞାନ ଓ ଦର୍ଶନ ଚର୍ଚ୍ଚାରୁ ସେ ବିରତ ହେଉ ନ ଥିଲେ । ତାଙ୍କର 'ଜ୍ଞାନର ପ୍ରଗତି' (୧୯) ପୁସ୍ତକ ୧୬୦୫ ରେ, 'ପ୍ରାଚୀନ ବ୍ୟକ୍ତିଙ୍କର ଜ୍ଞାନ (୨୦) ପୁସ୍ତକ ୧୬୦୯ରେ ଏବଂ 'ସନ୍ଦର୍ଭ' ପୁସ୍ତକର ଏକ ପରିବର୍ଦ୍ଧିତ ସଂସ୍କରଣ ୧୬୧୨ରେ ପ୍ରକାଶିତ ହୋଇଥିଲା । ସେ ଇତିମଧ୍ୟରେ ତାଙ୍କର ଯୁଗାନ୍ତକାରୀ ଗ୍ରନ୍ଥ 'ନୂତନ ସାଧନ' (୨୧)ର ପାଣ୍ଡୁଲିପି ମଧ୍ୟ ପ୍ରସ୍ତୁତ କରି ରଖିଥିଲେ ଏବଂ 'ଇଂଲଣ୍ଡର ଆଇନ ଗୁଡ଼ିକର ଶୃଙ୍ଖଳିତ ପୁନଃ ସଙ୍କଳନ' କାର୍ଯ୍ୟରେ ମଧ୍ୟ ନିଯୁକ୍ତ ରହିଥିଲେ ।

ବେକନ୍ଙ୍କର ଚିନ୍ତା ଓ କାର୍ଯ୍ୟରେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ନାହିଁ । ତାଙ୍କର ଉଚ୍ଚକୋଟିର ଚିନ୍ତାଧାରା ନିମିତ୍ତ ଗ୍ରନ୍ଥକାର ହିସାବରେ ସେ ଚିର ସ୍ମରଣୀୟ ହୋଇ ରହିଛନ୍ତି । ମାନବ ସମାଜର ମଙ୍ଗଳ ଚିନ୍ତା କରି

---

(୧୮) Case of the post Nati in the Exchequer chamber.

(୧୯) Advancement of Learning

(୨୦) Wisdom of the Ancients

(୨୧) Novum Organum

ବିଜ୍ଞାନ ଓ ଦର୍ଶନର ପ୍ରଗତି ବିଧାନ ତାଙ୍କର ଚିନ୍ତା ଓ ରଚନାର ସର୍ବ ପ୍ରଧାନ ଲକ୍ଷ୍ୟ ଥିଲି ଏବଂ ଏଥିରେ ସେ ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରିଥିଲେ । ଚିନ୍ତା ରାଜ୍ୟର ପରିବ୍ରାଜକ ବେକନ୍ ସ୍ୱୀୟ ସାଧନା ବଳରେ ତାଙ୍କ ଭବିଷ୍ୟତ ବଂଶଧର ମାନଙ୍କର ଅଗ୍ରଦୂତ ଭାବେ କାର୍ଯ୍ୟକରି ସେମାନଙ୍କ ପଥ ସୁଗମ କରି ଯାଇଥିଲେ । କିନ୍ତୁ ଆଇନ୍ ବ୍ୟବସାୟୀ, ରାଜ କର୍ମଚାରୀ ବେକନ୍ ଜଣେ ଉଚ୍ଚକୋଟିର ମାନବ ଥିଲେ ବୋଲି କହିଲେ ସତ୍ୟର ଅପଲାପ ହେବ । ଏହି କ୍ଷେତ୍ରରେ ସେ ବିବେକ ଦ୍ୱାରା ପରିଚାଳିତ ହୋଇ ନିଜର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ରକ୍ଷାକରି କାର୍ଯ୍ୟ କରୁଥିଲେ ବୋଲି କୁହାଯାଇ ନ ପାରେ । ଧନ, ମାନ, ପ୍ରତିପତ୍ତି ଓ ରାଜାନୁଗ୍ରହ ଲାଭଯାରେ ସେ ଯେ କୌଣସି ଗର୍ହିତ କାର୍ଯ୍ୟ କରିବା ନିମିତ୍ତ କୁଣ୍ଠାବୋଧ କରୁ ନ ଥିଲେ । ଏ କ୍ଷେତ୍ରରେ ତାଙ୍କର ଲକ୍ଷ୍ୟ, ମାନବ-ସମାଜର ଉନ୍ନତି ନୁହେଁ, ନିଜର ସ୍ୱାର୍ଥସିଦ୍ଧିରେହିଁ ପର୍ଯ୍ୟବସିତ ଥିଲି । ସେ ଏହି ଆଶାରେହିଁ ଏଲିଜାବେଥ୍ଙ୍କ ଅମଳରେ ପ୍ରିୟତମ ବନ୍ଧୁ ଏସେକ୍ସଙ୍କର ଚରିତ୍ର ଓ କାର୍ଯ୍ୟ କଳାପକୁ ଅତି କୁତ୍ସିତ ଭାବେ ଚିତ୍ରଣ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ; ଜେମସ୍ଙ୍କ ଅମଳରେ ବ୍ୟକ୍ତି ସ୍ୱାଧୀନତା ବିରୁଦ୍ଧରେ ସ୍ୱର ଉତ୍ତୋଳନ ତଥା ଶାସକଙ୍କ ସ୍ୱେଚ୍ଛାଚାରିତାର ସମର୍ଥନ କରି ଅଲିଭର୍ ସେଣ୍ଟ୍ଜନ୍ ଓ ପିଚ୍ଚମ୍ (୨୨) ଙ୍କୁ ନିର୍ମମ ଭାବେ ନିର୍ଯ୍ୟାତିତ ତଥା କାରାବଦ୍ଧ କରାଇବାକୁ କୁଣ୍ଠିତ ହୋଇ ନ ଥିଲେ । ସତ୍ୟାନ୍ୱେଷୀ, ଦାର୍ଶନିକ ବେକନ୍ ଗ୍ରନ୍ଥାଗାର ଓ ଗବେଷଣାଗାରରେ ଥିଲାବେଳେ ସମସ୍ତ କୁସଂସ୍କାରରୁ ମାନବକୁ ମୁକ୍ତ କରି ସମାଜର ସମୃଦ୍ଧି ବିଧାନ ନିମିତ୍ତ ସତତ ଚେଷ୍ଟିତ; କିନ୍ତୁ ସୁଖାନ୍ୱେଷୀ, ରାଜକର୍ମଚାରୀ ବେକନ୍ ରାଜ ଦରବାର ଓ କାର୍ଯ୍ୟାଳୟରେ ଥିଲାବେଳେ ସମାଜରେ ସମସ୍ତ କୁସଂସ୍କାରକୁ ପ୍ରଶ୍ରୟଦେଇ ନିଜର ଶ୍ରୀବୃଦ୍ଧି ସାଧନ ନିମିତ୍ତ ସତତ ଚେଷ୍ଟିତ । ଏହି ଦୁଇ ବେକନଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ତଥାପି ଉଭୟ ବେକନ୍ ଏକାଧାରରେହିଁ ଅବସ୍ଥାନ କରୁଥିଲେ ।

(୨୨) Oliver St. John and Peacham

ଦୂରଦର୍ଶୀ ବେକନ୍ ଜାଣିପାରିଥିଲେ ଯେ, ନିକଟ ଭବିଷ୍ୟତରେ ବିଲିୟର୍ସ (୧୩) ବକିଂହାମ୍‌ର ଡିଉକ୍ ରୂପେ ଜେମସ୍‌ଙ୍କ ରାଜତ୍ୱରେ ସର୍ବାପେକ୍ଷା ଶକ୍ତିଶାଳୀ ହୋଇ ଉଠିବେ । ତେଣୁ ରାଜ-ସଭାସଦ୍‌ର ଅନ୍ୟାନ୍ୟ ସଭ୍ୟମାନେ ସମରସେଟ୍ (୧୪) ଙ୍କ ସହିତ ସଦ୍ଭାବ ରଖିବାକୁ ବ୍ୟଗ୍ରତା ପ୍ରକାଶ କରୁଥିବା ବେଳେ ବେକନ୍ ବିଲିୟର୍ସଙ୍କ ସହିତ ବନ୍ଧୁତ୍ୱର ଆୟୋଜନ କରୁଥିଲେ । ଏବଂ ବିଲିୟର୍ସ ତାଙ୍କର ରାଜନୈତିକ ଜୀବନର ପ୍ରାରମ୍ଭରେ ବେକନ୍‌ଙ୍କ ପରି ଜଣେ ଅଭିଜ୍ଞ ଆଇନ୍‌ବିତ୍, ଉଚ୍ଚପଦସ୍ଥ କର୍ମଚାରୀ ଓ ଲବ୍ଧ ପ୍ରତିଷ୍ଠ ରାଜନୀତିଜ୍ଞଙ୍କ ପରାମର୍ଶ ଲାଭକରିବା ଦ୍ୱାରା ବିଶେଷ ଉପକୃତ ହୋଇଥିଲେ । କାଳକ୍ରମେ ସମରସେଟ୍‌ଙ୍କ ପ୍ରତିପତ୍ତି ନଷ୍ଟ ହୋଇଯାଇଥିଲା ଏବଂ ବକିଂହାମ୍‌ର ଡିଉକ୍ ବିଲିୟର୍ସ ଇଂଲଣ୍ଡର ଲର୍ଡ ହାଇ ଆଡ଼ମିରାଲ (୧୫) ରୂପେ ରାଜା ଜେମସ୍‌ଙ୍କୁ ଯଥେଷ୍ଟ ପ୍ରଭାବିତ କରିବାର ସାମର୍ଥ୍ୟ ଅର୍ଜନ କରିଥିଲେ । ତାହାଙ୍କ ସାହାଯ୍ୟରେହିଁ ବେକନ୍ ୧୬୧୬ରେ ପ୍ରିଭିକାଉନ୍‌ସିଲର୍ (୧୬) ଏବଂ ୧୬୧୭ରେ ଲର୍ଡ ବ୍ରେକ୍‌ଲେଙ୍କ ଅବସର ଗ୍ରହଣ ପରେ ସିଲ୍‌ରକ୍ଷକ ରୂପେ ନିଯୁକ୍ତି ପାଇଥିଲେ ।

ସିଲ୍‌ରକ୍ଷକ ରୂପେ ଗୁରୁଦାୟିତ୍ୱ ବହନ କରିବାର ପ୍ରାରମ୍ଭିକ ଭାଷଣରେ ବେକନ୍ ନ୍ୟାୟ ଓ ନିଷ୍ଠାର ସହିତ ତାଙ୍କର କାର୍ଯ୍ୟ ସମ୍ପନ୍ନ କରିବେ ବୋଲି ପ୍ରକାଶ କରିଥିଲେ । କିନ୍ତୁ ଏହି ପ୍ରତିଜ୍ଞା ପାଳନ କରିବାରେ ତାଙ୍କର ଆନ୍ତରିକତା ଥିଲା ବୋଲି ମନେହୁଏ ନାହିଁ । ଐତିହାସିକ ମାନଙ୍କ ମତରେ ଇଂଲଣ୍ଡ ଇତିହାସର କେତୋଟି କଳଙ୍କ କାଳିମାମୟ ପୃଷ୍ଠା ଏହି ସମୟର ଘଟଣା ବର୍ଣ୍ଣନାରେ ପରିପୂର୍ଣ୍ଣ । ଇଂଲଣ୍ଡର ବୈଦେଶିକ ନୀତି କୌଣସି ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ପରିଚାଳିତ ହେଉନଥିଲା ଏବଂ

(୧୩) George Villiers, Duke of Buckingham
(୧୪) Robert Carr Earl of Somerset
(୧୫) Lord High Admiral
(୧୬) Privy Councillor

ଅଭ୍ୟନ୍ତରୀଣ ବ୍ୟାପାରରେ ରାଜା ଏବଂ ତାହାଙ୍କ ଅନୁଚର ବର୍ଗଙ୍କ ସ୍ୱେଚ୍ଛାଚାରିତା ନଗ୍ନ ରୂପରେ ପ୍ରକାଶ ପାଉଥିଲା । ଅବଶ୍ୟ ରାଜାଙ୍କର ଦୁର୍ନୀତିଗୁଡ଼ିକ ଏହି ମନ୍ତ୍ରୀ ପ୍ରଧାନତଃ ଦାୟୀ; କିନ୍ତୁ ମୋହର୍‌ରକ୍ଷକ ବେକନ୍ ଏଥିରେ ଅଂଶ ଗ୍ରହଣ କରିନଥିଲେ ବୋଲି କୁହାଯାଇ ନ ପାରେ । ବନ୍ଧୁ ବକିଂହାମ୍ ଏବଂ ତାଙ୍କ ପରିବାରର ବ୍ୟକ୍ତିମାନଙ୍କର ସାହାଯ୍ୟାର୍ଥେ ପକ୍ଷପାତିତା କରିବାରେ ସେ ଆଦୌ କୁଣ୍ଠାବୋଧ କରୁନଥିଲେ । ବିଚାରକ କୌଣସି କ୍ଷେତ୍ରରେ କାହାର ଦ୍ୱାରା ପ୍ରଭାବିତ ନ ହେବା ଉଚିତ ବୋଲି ସେ ନିଜେ ନୀତି ଧାର୍ଯ୍ୟ କରିଥିଲେ ମଧ୍ୟ ବହୁ କ୍ଷେତ୍ରରେ ସେ ନିଜ ବିବେକ ଦ୍ୱାରା ପରିଚାଳିତ ନ ହୋଇ ବକିଂହାମ୍‌ଙ୍କ ନିର୍ଦ୍ଦେଶାନୁକ୍ରମେ କାର୍ଯ୍ୟ କରି ଥିଲେ ।

ବକିଂହାମ୍ ଓ ବେକନ୍‌ଙ୍କ ପରସ୍ପର ବନ୍ଧୁତା ହେତୁ ଉଭୟେ ଲାଭବାନ୍ ହେଉଥିଲେ ଏବଂ ବେକନ୍ ଅତି ସନ୍ତର୍ପଣରେ ଏହି ବନ୍ଧୁତା ବଜାୟ ରଖି କାର୍ଯ୍ୟ କରୁଥିଲେ । କେବଳ ଥରେ ମାତ୍ର ଏଥିରେ ବ୍ୟତିକ୍ରମ ଘଟିଥିଲା । ବକିଂହାମ୍‌ଙ୍କ ଭାଇ ସାର୍ ଜନ୍ ଭିଲିୟର୍ସ ବିବାହ କରିବା ପାଇଁ ଜଣେ ବିତ୍ତଶାଳିନୀ କନ୍ୟାର ସନ୍ଧାନରେ ଥିଲେ ଏବଂ ସାର୍ ଏଡ୍‌ୱାର୍ଡ କୋକ୍‌ଙ୍କ କନ୍ୟା ଏଥିପାଇଁ ମନୋନୀତା ହୋଇଥିଲେ । କିନ୍ତୁ ସାର୍ କୋକ୍ ଏହି ପ୍ରସ୍ତାବକୁ ସମର୍ଥନ କରୁଥିବା ସ୍ଥଳେ ତାଙ୍କର ପତ୍ନୀ ଲେଡ଼ି ହେଟନ କୋକ୍ ଏଥିରେ ଏକମତ ହୋଇ ନ ଥିଲେ । ହେଟନ୍ ନିଜ କନ୍ୟାଙ୍କୁ ଅପହରଣ କରି ସ୍ୱାମୀଙ୍କୁ ପରିତ୍ୟାଗ କଲେ । କୋକ୍ ସେମାନଙ୍କର ଅନୁଧାବନ କରି ବଳାତ୍କାରରେ କନ୍ୟାଙ୍କୁ ନେଇ ଆସିଲେ । ସେତେବେଳେ ରାଜା ଓ ବକିଂହାମ୍ ସ୍କଟଲାଣ୍ଡ ଯାଇଥିଲେ ଏବଂ ବେକନ୍ ଶାସନ ମୁଖ୍ୟ ଭାବେ କାର୍ଯ୍ୟ କରୁଥିଲେ । ଏଡ୍‌ୱାର୍ଡ କୋକ୍ ବେକନ୍‌ଙ୍କର ଚିର ଶତ୍ରୁ ଥିଲେ ଏବଂ କୋଡ଼ିଏ ବର୍ଷ ପୂର୍ବେ ତାଙ୍କ ଯୋଗୁଁ ବେକନ୍ ହେଟନ୍‌ଙ୍କୁ ବିବାହ କରି ପାରିନଥିଲେ । ଏବେ କୋକଙ୍କ ଠାରୁ ପ୍ରତିଶୋଧ ନେବାର ସୁଯୋଗ ଦେଖି ସେ ତାଙ୍କ ବିରୁଦ୍ଧରେ ମୋକଦ୍ଦମା ରୁଜୁ କରିବାକୁ ଆଟର୍ଣ୍ଣି ଜେନେରାଲଙ୍କୁ ଆଦେଶ

ଦେଲେ ଏବଂ ରାଜା ଓ ବକିଂହାମ୍‌ଙ୍କ ଏହି ବିବାହ ପ୍ରସ୍ତାବ ବିରୁଦ୍ଧରେ ମତାମତ ଦେଇ ପତ୍ର ଦେଲେ । ବକିଂହାମ୍ ବେକନଙ୍କର ଏ ପ୍ରକାର କାର୍ଯ୍ୟରେ ଘୋର ଅସନ୍ତୋଷ ଓ କ୍ରୋଧ ପ୍ରକାଶ କରି ରାଜାଙ୍କୁ ମଧ୍ୟ କ୍ରୋଧାନ୍ୱିତ କରାଇ ଦେଲେ । ଆତ୍ମ୍‌ବିପଦର ଆଶଙ୍କାରେ ବେକନ୍ ଭୀତତ୍ରସ୍ତ ହୋଇ ଅତ୍ୟନ୍ତ ଦୀନହୀନ ଭାବେ କ୍ଷମାପ୍ରାର୍ଥନା କରି ବକିଂହାମ୍‌ଙ୍କ କ୍ରୋଧାଗ୍ନିରେ ଦଗ୍ଧୀଭୂତ ହେବାରୁ ରକ୍ଷା ପାଇଗଲେ । ଯେତେ ଯୁକ୍ତିଯୁକ୍ତ କାରଣ ଥିଲେ ମଧ୍ୟ ପ୍ରଭାବଶାଳୀ ବ୍ୟକ୍ତିଙ୍କର ବିରାଗଭାଜନ ହେବାର ଦୁଃସାହସିକତା ସେ ଜୀବନରେ ଦ୍ୱିତୀୟବାର କରି ନ ଥିଲେ ।

ସିଲ୍‌ରକ୍ଷକ ଥିଲାବେଳେ ବେକନଙ୍କର ବ୍ୟକ୍ତିଗତ ଜୀବନର ସୁଖ-ସମୃଦ୍ଧି ଚରମ ସୀମାରେ ପହଞ୍ଚିଥିଲା । ସେ ଯେତେବେଳେ ପୂର୍ବେ ତାଙ୍କ ପିତା ରହୁଥିବା 'ୟର୍କହାଉସ୍'ରେ ଅତି ଆଡ଼ମ୍ବର ସହକାରେ ରହୁଥିଲେ । ଧନ, ମାନ, ଯଶ, ଗୌରବ ଇତ୍ୟାଦି କୌଣସି ବିଷୟରେ ତାଙ୍କର ଅଭାବ ନ ଥିଲା । ତାହାଙ୍କୁ ଅଧିକ ଗୌରବାନ୍ୱିତ 'ଚାନ୍ସେଲର୍' (୧୬) ପଦବୀରେ ଭୂଷିତ କରା ଯାଇଥିଲା ଏବଂ ରାଜ କର୍ମଚାରୀ ରୂପେ ଏହାଠାରୁ ଉଚ୍ଚତର କୌଣସି ପଦବୀ ନ ଥିଲା । ତେଣୁ ପରିଶେଷରେ ତାହାଙ୍କୁ ଆଭିଜାତ୍ୟସୂଚକ 'ବେରନ୍ ଭେରୁଲାମ୍' (୧୭) ଓ ଆହୁରି ଗୌରବାବହ 'ଭାଇକାଉଣ୍ଟ ସେଣ୍ଟ ଆଲ୍‌ବାନ୍ସ' (୧୮) ପଦବୀ ପ୍ରଦାନ କରାଯାଇ ଉଚ୍ଚତର ସମାଜରେ ସୁପ୍ରତିଷ୍ଠିତ କରା ଯାଇଥିଲା ।

ବେକନ୍ ତାଙ୍କର ଅବକାଶ ଗୁଡ଼ିକ ଗର୍‌ହାମ୍‌ବରୀରେ ଅତିବାହିତ କରୁଥିଲେ । ସେଠାରେ ସେ ରାଜନୀତି ଓ ଆଇନ୍ ବ୍ୟବସାୟର ସମସ୍ତ ଜଞ୍ଜାଳ-ଜଟିଳତା ଠାରୁ ଦୂରରେ ରହି ସାହିତ୍ୟ ସାଧନା ଓ ଉଦ୍ୟାନ କର୍ମରେ ନିୟୋଜିତ ରହୁଥିଲେ । ଅବସର ସମୟରେ ବିଜ୍ଞାନ ଓ ଦର୍ଶନ

---

(୧୬) Chancellor

(୧୭) Baron Verulam

(୧୮) Viscount St Albans

ଅଲୋଚନାର ସୁବିଧା ନମିତ୍ତ ସେ ସ୍ବର୍ଣ୍ଣହ୍ରାଉସ ଅଞ୍ଚଳରେ ମଧ୍ଯ ଦଣହ୍ରକାର ପାଉଣ୍ଡ ବ୍ୟୟରେ ଏକ ସୁରମ୍ୟ ଅବସର-ନିବାସ ନିର୍ମାଣ କରାଇଥିଲେ । ସେଠାରେ ସେ କର୍ମରତ ଥିଲାବେଳେ ପରବର୍ତ୍ତୀ ଯୁଗର ବିଶିଷ୍ଟ ଦାର୍ଶନିକ ଟମାସ୍ ହବ୍ସଙ୍କ (୨୯) ପରି ତାଙ୍କର କେତେକ ଯୁବକ ବନ୍ଧୁଙ୍କ ବ୍ୟତୀତ ଅନ୍ୟ କେହି ତାହାଙ୍କ ସହିତ ସାକ୍ଷାତ କରିବାକୁ ଅନୁମତି ପାଉ ନ ଥିଲେ ।

ଇତି ମଧ୍ୟରେ ସେ ତାଙ୍କର 'ମହତ୍ ନବୀକରଣ' (୩୦) ଗ୍ରନ୍ଥ ପ୍ରକାଶ କରି ରାଜା ଜେମସ୍‌ଙ୍କ ନାମରେ ତାହାକୁ ଉତ୍ସର୍ଗ କରିଥିଲେ । ତାଙ୍କର 'ସପ୍ତମ ହେନେରୀଙ୍କ ଇତିହାସ' (୩୧) ଓ 'ପ୍ରାକୃତିକ ଇତିହାସ' (୩୨) ରାଜକୁମାରଙ୍କ ନାମରେ ଏବଂ 'ସନ୍ଦର୍ଭ'ର ପରିବର୍ଦ୍ଧିତ ସଂସ୍କରଣ ବକିଂହାମ୍‌ଙ୍କ ନାମରେ ଉତ୍ସର୍ଗୀକୃତ ହୋଇଥିଲା । ୧୬୨୦ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ତାଙ୍କର ଅମରକୃତି 'ନୂତନ ସାଧନ' ଆତ୍ମପ୍ରକାଶ ଲାଭକଲା ଏବଂ ବେକନ୍‌ଙ୍କ ଦାର୍ଶନିକ ପ୍ରତିଭାର ଗୌରବଗାଥା ଦେଶ ବିଦେଶ ସର୍ବତ୍ର ଶୁଣାଗଲା ।

ପଦମର୍ଯ୍ୟାଦା ଓ ଜ୍ଞାନଗୌରବର ଶୀର୍ଷ ସ୍ଥାନରେ ଅବସ୍ଥାପିତ ହୋଇଥିବା ସମୟରେହିଁ ଅପ୍ରତ୍ୟାଶିତ ଭାବେ ବେକନ୍‌ଙ୍କ ବିରୁଦ୍ଧରେ ଅକ୍ଷମଣୀୟ ଦୋଷର ଅଭିଯୋଗ ଆନୀତ ହେଲା ।

୧୬୨୧ ଖ୍ରୀଷ୍ଟାବ୍ଦରେ ବେକନ୍ ଭାଇକାଉଣ୍ଟ୍ ସେଣ୍ଟ୍ ଆଲବାନ୍ସ ରୂପେ ଅଭିଷିକ୍ତ ହେବାର ମାତ୍ର ତିନୋଟି ଦିନ ପରେ ଜେମସ୍‌ଙ୍କ ତୃତୀୟ ପାର୍ଲିଆମେଣ୍ଟର ପ୍ରଥମ ଅଧିବେଶନ ଆରମ୍ଭ ହେଲା । ଅର୍ଥାଭାବ ହେତୁ ରାଜା ଜେମସ୍ ତାଙ୍କର ତୃତୀୟ ପାର୍ଲିଆମେଣ୍ଟ ଆହ୍ୱାନ କରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ଏହି ପାର୍ଲିଆମେଣ୍ଟ ଦ୍ୱାରା ରାଜା ଓ ତାହାଙ୍କ

(୨୯) Thomas Hobbes (1588-1679)

(୩୦) Great Instauration

(୩୧) History of Henry the Seventh

(୩୨) Natural History

ପ୍ରିୟତମ ଶାସନମୁଖ୍ୟମାନେ ଏପରିଭାବେ ବିପଦଗ୍ରସ୍ତ ହେବେ ବୋଲି କେହି କଳ୍ପନା ସୁଦ୍ଧା କରି ନ ଥିଲେ ।

ବିଚାରାଳୟଗୁଡ଼ିକର ଅବସ୍ଥା ତଦନ୍ତ କରିବା ନିମିତ୍ତ କମନ୍‌ସ ସଭାର କେତେକ ସଭ୍ୟଙ୍କୁ ନେଇ ସାର୍ ରବର୍ଟ ଫିଲିପ୍‌ସଙ୍କ ସଭାପତିତ୍ୱରେ ଗୋଟିଏ କମିଟି ଗଠନ କରାଯାଇ ଥିଲା । ୧୪ ମାର୍ଚ୍ଚ ୧୬୨୧ରେ ଏହି କମିଟିର ସଭାପତି କମନ୍‌ସ ସଭାକୁ ଜଣାଇ ଦେଲେ ଯେ ଲର୍ଡ଼ଚାନ୍‌ସେଲର ବେକନ୍‌ଙ୍କ ବିରୁଦ୍ଧରେ ଉତ୍କୋଚ ଗ୍ରହଣ ଅଭିଯୋଗର ସ୍ପଷ୍ଟ ପ୍ରମାଣ କମିଟି ପାଇ ପାରିଛନ୍ତି । ଅବ୍ରୋନାମକ ଜଣେ ଆସାମୀ ଠାରୁ ଏକଶତ ପାଉଣ୍ଡ ଏବଂ ଏଗରଟନ୍ ନାମକ ଅନ୍ୟ ଜଣେ ଆସାମୀଙ୍କ ଠାରୁ ଦୁଇଶତ ପାଉଣ୍ଡ ଉତ୍କୋଚ ଗ୍ରହଣ କରି ସୁଦ୍ଧା ବେକନ ସେମାନଙ୍କ ବିରୁଦ୍ଧରେ ରାୟ ଦେଇଥିବା ଅଭିଯୋଗର ଅପମିଥ୍ୟ ସାକ୍ଷ୍ୟ ପ୍ରମାଣ କମିଟିର ହସ୍ତଗତ ହୋଇଥିଲା ।

ପୂର୍ବବର୍ତ୍ତୀ ପାର୍ଲିଆମେଣ୍ଟରେ ବେକନ୍ ନିଜେ ଜଣେ ସଭ୍ୟଥିଲେ ଏବଂ ତାଙ୍କର ଅନେକ ବନ୍ଧୁ ଏହି ପାର୍ଲିଅମେଣ୍ଟରେ ମଧ୍ୟ ସଭ୍ୟ ଥିଲେ; କିନ୍ତୁ ଅଭିଯୋଗ ସପକ୍ଷରେ ଏପରି ଅକାଟ୍ୟ ସାକ୍ଷ୍ୟପ୍ରମାଣ ରହିଥିଲା ଯେ ତାହାକୁ କୌଣସିଭାବେ ଚପାଇ ଦେବା ସମ୍ଭବପର ହେଲ ନାହିଁ । କମନ୍‌ସ ସଭା ଏହି ବ୍ୟାପାରରେ ନିଜର ରାୟ ସ୍ଥଗିତ ରଖି ଲର୍ଡ଼ ସଭାରେ ଏହାର ବିଚାର କରାଯାଉ ବୋଲି ବେକନ୍‌ଙ୍କର ବନ୍ଧୁମାନେ ପ୍ରସ୍ତାବ ଦେଲେ । ୧୯ ମାର୍ଚ୍ଚରେ ସ୍ୱୟଂ ରାଜା ବେକନ୍‌ଙ୍କ ପରି ଜଣେ ଖ୍ୟାତନାମା ବ୍ୟକ୍ତିଙ୍କୁ ଅଭିଯୁକ୍ତ କରାଯାଇ ଥିବାରୁ ଦୁଃଖ ପ୍ରକାଶ କରିଥିଲେ; କିନ୍ତୁ କାହାରିକୁ ଦଣ୍ଡ ଘୋଡ଼ାଇ ରଖିବା ତାଙ୍କର ଅଭିପ୍ରାୟ ନୁହେଁ ବୋଲି ମଧ୍ୟ ପ୍ରକାଶ କରିଥିଲେ । ଏଥି ନିମିତ୍ତ ଉଭୟ ସଭାର ଅଠର ଜଣ ସଭ୍ୟ ବିଶିଷ୍ଟ ଗୋଟିଏ ନୂତନ ଧରଣର ଟ୍ରିବ୍ୟୁନାଲ୍ ଗଠନ କରି ତାହାକୁ ଏହି ବିଷୟର ତଦନ୍ତ ଦାୟିତ୍ୱ ଦେବେ ବୋଲି ପ୍ରତିଶ୍ରୁତି ଦେଇ ରାଜା କମନ୍ ସଭାକୁ ବାର୍ତ୍ତା ପଠାଇଲେ; କିନ୍ତୁ କମନ୍‌ସ ସଭା ଏହି ବିଷୟରେ ପ୍ରଚଳିତ ପଦ୍ଧତିର ବ୍ୟତିକ୍ରମ କରିବାକୁ ଅନିଚ୍ଛା

ପ୍ରକାଶ କରି ସେହିପରି ଲର୍ଡମାନଙ୍କ ସହିତ ମିଳିତ ହୋଇଥିଲେ ଏବଂ ବେକନ୍ ଦୋଷୀ ସାବ୍ୟସ୍ତ ହୋଇଛନ୍ତି ବୋଲି ସ୍ପଷ୍ଟ ମତ ପ୍ରକାଶ ପାଇଲା ।

ଲଜ୍ଜା, କ୍ଷୋଭ ଓ ମନସ୍ତାପରେ ବେକନ୍ ଅତ୍ୟନ୍ତ ମ୍ରିୟମାଣ ତଥା ଅସୁସ୍ଥ ହୋଇ ପଡ଼ିଥିଲେ ଏବଂ କାହାରି ସଙ୍ଗରେ ସାକ୍ଷାତ କରୁ ନଥିଲେ । ଇତି ମଧ୍ୟରେ ତାହାଙ୍କ ବିରୁଦ୍ଧରେ ଅଭିଯୋଗର ସଂଖ୍ୟା ଦୁଇରୁ ତେଇଶିକୁ ବୃଦ୍ଧି ପାଇଥିଲା । କିନ୍ତୁ ହଠାତ୍ ରାଜା ୨୭ ମାର୍ଚ୍ଚରେ ତିନି ସପ୍ତାହ ପାଇଁ ପାର୍ଲିଆମେଣ୍ଟକୁ ସ୍ଥଗିତ ରଖିଦେଲେ । ବେକନଙ୍କର ମନରେ ଆଶାର ସଞ୍ଚାର ହେଲା । ରାଜା ହୁଏତ ତାହାଙ୍କୁ ରକ୍ଷା କରିବା ପାଇଁ ପାର୍ଲିଆମେଣ୍ଟର ରାୟକୁ ପରିବର୍ତ୍ତନ କରି ପାରନ୍ତି ଅଥବା ଆପାତତଃ ପାର୍ଲିଆମେଣ୍ଟକୁ ଭାଙ୍ଗି ଦେଇ ପାରନ୍ତି ବୋଲି ତାଙ୍କର ଧାରଣା ଜାତ ହେଲା । ରାଜାଙ୍କ ସହିତ ସାକ୍ଷାତ କରି ସେ ଏହି ଉଦ୍ଦେଶ୍ୟରେ ତାଙ୍କର ସମସ୍ତ ବୁଦ୍ଧି ଓ କୌଶଳ ପ୍ରୟୋଗ କଲେ; କିନ୍ତୁ ଉପସ୍ଥିତ ପରିସ୍ଥିତିରେ ବେକନଙ୍କୁ ରକ୍ଷା କରିବା ରାଜାଙ୍କ ଶକ୍ତି-ବହିର୍ଭୂତ ଥିଲା । ଯେକୌଣସି ଉପାୟରେ ମଧ୍ୟ ସେ ଏହା କରିବାକୁ ଚେଷ୍ଟା କରିଥିଲେ ବେକନଙ୍କର ସମ୍ମାନର ପୁନରୁଦ୍ଧାର ତ ହୋଇ ପାରି ନ ଥାନ୍ତା, ବରଂ ରାଜତନ୍ତ୍ରର ସ୍ଥିତିରେ ମଧ୍ୟ ଆଶଙ୍କା ସୃଷ୍ଟି ହୋଇ ଥା'ନ୍ତା । ତେଣୁ ରାଜା ବେକନଙ୍କୁ ନିଜର ଦୋଷ ସ୍ୱୀକାର କରିବାକୁ ଉପଦେଶ ଦେଲେ ଏବଂ ସେ ଯଥା ସମ୍ଭବ ଦଣ୍ଡାଦେଶ ଲଘବ କରିବାକୁ ପ୍ରତିଶ୍ରୁତି ଦେଲେ ।

୧୭ ଏପ୍ରିଲରେ ପୁଣି ପାର୍ଲିଆମେଣ୍ଟର ଅଧିବେଶନ ବସିଲା ଏବଂ ବେକନଙ୍କ ବିରୁଦ୍ଧରେ ଆନୀତ ଅଭିଯୋଗର ତଦନ୍ତ ପୁନରାରମ୍ଭ ହେଲା । ୨୨ ଏପ୍ରିଲରେ ବେକନ୍ ରାଜକୁମାରଙ୍କ ହସ୍ତରେ ଲର୍ଡ ସଭାକୁ ଗୋଟିଏ ପତ୍ର ପ୍ରେରଣ କଲେ ଏବଂ ତହିଁରେ ସେ ସତର୍କତାର ସହିତ ଭାଷା ବ୍ୟବହାର କରି ନିଜର ଦୋଷକୁ ସାଧାରଣଭାବେ ସ୍ୱୀକାର କରିଥିଲେ ମଧ୍ୟ ତାହାକୁ ଲଘବ କରିବାକୁ ଚେଷ୍ଟା କରିଥିଲେ । ତେଣୁ ଲର୍ଡସଭା ତାଙ୍କ ବିରୁଦ୍ଧରେ ଥିବା ସମସ୍ତ ଅଭିଯୋଗ ତାଙ୍କ ନିକଟକୁ ପ୍ରେରଣା କରିଥିଲେ ଏବଂ

ନିର୍ଦ୍ଦିଷ୍ଟଭାବେ ତାଙ୍କର ଦୋଷ ସ୍ୱୀକୃତ ହେବା ଆବଶ୍ୟକ ବୋଲି ମତ ଦେଇଥିଲେ । ବେକନ୍ ଅସହାୟ ଓ ଅନନ୍ୟୋପାୟ ହୋଇ ୩୦- ଏପ୍ରିଲରେ ନିର୍ଦ୍ଦିଷ୍ଟ ଓ ସ୍ପଷ୍ଟଭାବରେ ନିଜର ଦୋଷ ସ୍ୱୀକାର କରି ପତ୍ର ପ୍ରେରଣ କରିଥିଲେ । ତାପରେ ଲର୍ଡ଼ସଭାର ରାୟ ପ୍ରକାଶ ପାଇଲା । ଏହି ରାୟ ଶୁଣିବା ନିମିତ୍ତ ପ୍ରଥାନୁଯାୟୀ ଓ୍ୱେଷ୍ଟ୍ ମିନଷ୍ଟର୍ ହଲରେ ବେକନ୍ ଉପସ୍ଥିତ ରହିବା କଥା; କିନ୍ତୁ ତାଙ୍କର ମାନସିକ ଓ ଶାରୀରିକ ଅସୁସ୍ଥତା ହେତୁ ଏହି ଅସହ୍ୟ ଯନ୍ତ୍ରଣାଦାୟକ ପରିସ୍ଥିତିରୁ ଲର୍ଡ଼ସଭା ତାହାଙ୍କୁ ଅବ୍ୟାହତି ଦେଇଥିଲେ । ବେକନ୍‌ଙ୍କ ପ୍ରତି ଆକ୍ରୋଶ ରଖି ତାହାଙ୍କ ପ୍ରତି ଅବିଚାର କରା ଯାଇଥିଲା ବୋଲି ତାଙ୍କର ଜଣେ ଜୀବନୀ-ଲେଖକ ବେସିଲ୍ ମଣ୍ଟେଗୁ (୩୬) ମତ ପ୍ରକାଶ କରିଛନ୍ତି ଏବଂ ବେକନ୍ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇଥିଲେ ହେଁ କେବଳ ରାଜାଙ୍କ ଆଦେଶରେ ନିଜର ଦୋଷ ସ୍ୱୀକାର କରିଥିଲେ ବୋଲି ଯୁକ୍ତି ଉପସ୍ଥାପିତ କରିଛନ୍ତି । କିନ୍ତୁ ଏହି ମତ ସମର୍ଥନ-ଯୋଗ୍ୟ ବୋଲି ମନେ ହୁଏ ନାହିଁ । ବେକନ୍ ଯେ ଅଭିଯୁକ୍ତ ବ୍ୟକ୍ତିମାନଙ୍କଠାରୁ ଅର୍ଥ ଗ୍ରହଣ କରିଥିଲେ ଏକଥା ମଣ୍ଟେଗୁ ମଧ୍ୟ ଅସ୍ୱୀକାର କରି ନାହାନ୍ତି । ତେଣୁ ଏହାକୁ ଉତ୍କୋଚ ଆଖ୍ୟା ନ ଦେଇ ଉପଢ଼ୌକନ ବୋଲି ଆଖ୍ୟା ଦେଲେ ଅଥବା ତତ୍କାଳୀନ ପ୍ରଥାରେ ଏହାର ପ୍ରଚଳନ ଥିଲା ବୋଲି କେତେକ ଦୃଷ୍ଟାନ୍ତ ଦେଲେ ଅଥବା ବେକନ୍ ଏ ପ୍ରକାର ଅର୍ଥ ଗ୍ରହଣ କରି ସୁଦ୍ଧା ଦୋଷୀକୁ ସମୁଚିତ ଦଣ୍ଡ ଦେବାରେ ପକ୍ଷପାତ କରୁ ନ ଥିଲେ ବୋଲି ଯୁକ୍ତି ପ୍ରଦର୍ଶନ କଲେ ମଧ୍ୟ ବେକନ୍‌ଙ୍କୁ ଦୋଷମୁକ୍ତ କରାଯାଇ ନ ପାରେ । ଏହା ସମ୍ଭବପର ହୋଇଥିଲେ ରାଜା ନିଜର ଅତି ପ୍ରିୟପାତ୍ର ଓ ଶାସନମୁଖ୍ୟ ବେକନ୍‌ଙ୍କୁ ଦୋଷ ସ୍ୱୀକାର କରିବାକୁ ଉପଦେଶ ଦେଇ ନ ଥାନ୍ତେ, ସେମିତି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇ ସୁଦ୍ଧା କେବଳ ରାଜାଙ୍କ ପରିତୃପ୍ତି ନିମିତ୍ତ ବେକନ୍ ନିଜର ଦୋଷ ସ୍ୱୀକାର କରି ଆତ୍ମଗ୍ଳାନି ଓ ଅପବାଦ ସହ ନିଜର ଅବଶିଷ୍ଟ ଜୀବନ ଅତିବାହିତ କରିବାକୁ ଚାହିଁ ନ ଥାନ୍ତେ ।

ଲର୍ଡ଼ସଭାର ପ୍ରତ୍ୟେକ ସଭ୍ୟ ଜାଣିଥିଲେ ଯେ ସେମାନେ ବେକନ୍‌ଙ୍କୁ ଯେ କୌଣସି ପ୍ରକାର ଦଣ୍ଡ ଦେଲେ ମଧ୍ୟ ରାଜା ନିଜର କ୍ଷମା

(୩୬) Basil Mantagu

ଦେବା ଅଧିକାର ପ୍ରୟୋଗ କରି ତାହାଙ୍କୁ ତହିଁରୁ ଅବ୍ୟାହତ ଦେବେ । ତେଣୁ କେବଳ ବିଧିବିଧାନ ଦୃଷ୍ଟିରୁ ବେକନ୍‌ଙ୍କ ଦୋଷର ସମୁଚିତ ଦଣ୍ଡ ବିଧାନ କରା ଯାଇଥିଲା । ଲର୍ଡସଭାର ରାୟରେ ବେକନ୍‌ଙ୍କୁ ଚାଳିଶ ହଜାର ପାଉଣ୍ଡ ଅର୍ଥଦଣ୍ଡ ଓ ରାଜାଙ୍କ ଇଚ୍ଛାନୁସାରେ କାରାଦଣ୍ଡର ବ୍ୟବସ୍ଥା କରା ଯାଇଥିଲା । ଏତଦ୍‌ବ୍ୟତୀତ ରାଜକର୍ମ ସମ୍ପାଦନ କରିବା, ପାର୍ଲିଆମେଣ୍ଟର ସଭ୍ୟ ହେବା ଏବଂ ଆଇନ୍ ବ୍ୟବସାୟୀ ରୂପେ କାର୍ଯ୍ୟକରିବା ଅଧିକାରରୁ ମଧ୍ୟ ତାହାଙ୍କୁ ବଞ୍ଚିତ କରା ଯାଇଥିଲା ।

ବିଧିବିଧାନ ନିମିତ୍ତ ତାହାଙ୍କୁ କାରାଗାରକୁ ପ୍ରେରଣ କରାଯାଇଥିଲା । କିନ୍ତୁ ମାତ୍ର ଦୁଇଦିନ ମଧ୍ୟରେ ସେ କାରାମୁକ୍ତ ହୋଇ ଗର୍‌ହାମ୍‌ବରୀକୁ ଗମନ କରିଥିଲେ । ରାଜା ତାହାଙ୍କୁ ଅର୍ଥ ଦଣ୍ଡରୁ ମୁକ୍ତ କରିଦେଇ ଥିଲେ ଓ ପରେ ପରେ ସେ ଅନ୍ୟାନ୍ୟ ଦଣ୍ଡ ଭୋଗ କରିବାରୁ ମଧ୍ୟ ଅବ୍ୟାହତି ପାଇଥିଲେ । ପରବର୍ତ୍ତୀ ପାର୍ଲିଆମେଣ୍ଟର ଲର୍ଡ଼ ସଭାକୁ ମଧ୍ୟ ସେ ସଭ୍ୟ-ଭାବରେ ଆହୂତ ହୋଇଥିଲେ ।

ବେକନ୍‌ଙ୍କ ନିମିତ୍ତ ବାର୍ଷିକ ବାରଶହ ପାଉଣ୍ଡ ପେନ୍‌ସନ୍‌ର ବନ୍ଦୋବସ୍ତ କରାଯାଇ ଥିଲା ଏବଂ ତାଙ୍କର ଅନ୍ୟାନ୍ୟ ଆୟ ମିଶି ସେ ବର୍ଷକୁ ପ୍ରାୟ ଦୁଇହଜାର ପାଞ୍ଚଶତ ପାଉଣ୍ଡ ପାଉଥିଲେ । ସେ ଯୁଗର ଜଣେ ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତିର ହାରାହାରି ଆୟ ଅପେକ୍ଷା ଏହା ଅଧିକ ଥିଲା ଏବଂ ସୁଖ-ସ୍ୱାଚ୍ଛନ୍ଦ୍ୟରେ ରହିବା ନିମିତ୍ତ ଯଥେଷ୍ଟ ଥିଲା । ବେକନ୍ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବ୍ୟୟ ସଙ୍କୋଚ କରି ନ ଥିଲେ ଏବଂ ତାଙ୍କର ଆଭିଜାତ୍ୟପୂର୍ଣ୍ଣ ଜୀବନଯାପନ ଅକ୍ଷୁଣ୍ଣ ରଖିଥିଲେ । ଅବଶ୍ୟ ଏଥିନିମିତ୍ତ ତାହାଙ୍କୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଏତଦ୍-ବ୍ୟତୀତ ତାଙ୍କର ଦାମ୍ପତ୍ୟ ଜୀବନରେ ମଧ୍ୟ ଅସନ୍ତୋଷ ବୃଦ୍ଧି ପାଉଥିଲା । କିନ୍ତୁ ଏସବୁ ସତ୍ତ୍ୱେ ତାଙ୍କର ବୌଦ୍ଧିକ କାର୍ଯ୍ୟକଳାପରେ କୌଣସି ନ୍ୟୂନତା ପରିଲକ୍ଷିତ ହୋଇ ନ ଥିଲା । ସାହିତ୍ୟିକ, ବୈଜ୍ଞାନିକ, ଦାର୍ଶନିକ ବେକନ୍‌ଙ୍କର ବେଶିମାତ୍ର ପରିବର୍ତ୍ତନ ହୋଇ ନ ଥିଲା । ସେ ରାଜନୀତିରୁ

ସଂପୂର୍ଣ୍ଣ ଅବସର ଗ୍ରହଣ କରି ଜୀବନର ଅବଶିଷ୍ଟ କାଳ ଆଇନ୍, ଇତିହାସ ସାହିତ୍ୟ, ବିଜ୍ଞାନ ଓ ଦର୍ଶନ ସମ୍ବନ୍ଧୀୟ ପୁସ୍ତକ ରଚନାରେ ନିଜକୁ ନିୟୋଜିତ ରଖିଥିଲେ ଏବଂ ଏହି ସମୟରେହିଁ ତାଙ୍କର 'ବିଜ୍ଞାନର ଅଭିବୃଦ୍ଧି ଓ ମହତ୍ତ୍ୱ' (୩୪) ନାମକ ପୁସ୍ତକ ପ୍ରକାଶିତ ହୋଇଥିଲା ।

୧୬୨୬ ମସିହାର ବସନ୍ତ ଋତୁର ଏକ ଶୀତାର୍ତ୍ତ ସକାଳ । କିଛିଦିନ ଧରି ବେକନ୍‌ଙ୍କ ଗୋଟିଏ ଧାରଣା ଜାତ ହୋଇଥିଲା ଯେ ବରଫ ସାହାଯ୍ୟରେ ଜୈବିକ ପଦାର୍ଥର ପଚନଶୀଳତାରୁ ରକ୍ଷା କରାଯାଇ ପାରେ । ଏହାର ସତ୍ୟାସତ୍ୟତା ପରୀକ୍ଷା କରିବା ନିମିତ୍ତ ସେ ହାଇଗେଟ୍ ନିକଟବର୍ତ୍ତୀ ଗୋଟିଏ ସ୍ଥାନରେ ନିଜର ଘୋଡ଼ାଗାଡ଼ିରୁ ଅବତରଣ କରି ଏକ କୁଟୀରରୁ ଗୋଟିଏ କୁକୁଡ଼ା କିଣିଲେ ଏବଂ ତାହାର ପେଟ ଚିରି ନିଜ ହାତରେ ତହିଁରେ ବରଫ ପୂର୍ତ୍ତି କରିବାକୁ ଲାଗିଲେ । ଏହି କାର୍ଯ୍ୟ କରୁଥିବା ଅବସ୍ଥାରେହିଁ ଶୀତର ପ୍ରକୋପରୁ ହଠାତ୍ ସେ ଏକ ଅସ୍ୱାଭାବିକ ଶିହରଣ ଅନୁଭବ କଲେ । ତାଙ୍କର ଅସୁସ୍ଥତା ଏତେ ବୃଦ୍ଧି ପାଇଲା ଯେ ସେ ନିଜର ସାମୟିକ ବାସସ୍ଥାନ ଗ୍ରେଜ୍ ଇନ୍‌କୁ ଆଉ ଫେରି ପାରିଲେ ନାହିଁ । ହାଇଗେଟ୍‌ରେ ତାଙ୍କର ସୁପରିଚିତ ଆର୍ଲ ଅଫ୍ ଅରୁଣ୍ଡେଲ୍‌ଙ୍କ ଗୋଟିଏ ଗୃହ ଥିଲା । ତାହାଙ୍କୁ ସେଠାକୁ ନିଆଯାଇ ତାଙ୍କର ସମସ୍ତ ପ୍ରକାର ସେବାଯତ୍ନର ଆୟୋଜନ କରାଗଲା । ଏହି ଘଟଣାର ପ୍ରାୟ ଏକ ସପ୍ତାହ ଅସୁସ୍ଥତା ଭୋଗକରି ଏପ୍ରିଲମାସ ୯ ତାରିଖ ଇଷ୍ଟର ଦିନର ସକାଳ ସମୟରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କର ସଂଶୋଧ ପଥରେ ମଧ୍ୟ ସେ ବରଫ ସମ୍ବନ୍ଧୀୟ ପରୀକ୍ଷଣ ବିଷୟ ବିସ୍ମୃତ ହୋଇ ନ ଥିଲେ । ତହିଁରେ ଜୈବିକ ପଦାର୍ଥର ପଚନଶୀଳତାରୁ ରକ୍ଷା କରିବା ନିମିତ୍ତ ବରଫ ଏକ ଉପଯୁକ୍ତ ଉପାଦାନ ଏବଂ ଏହା ଯଥାଯଥ ପରୀକ୍ଷା ଦ୍ୱାରା ପ୍ରମାଣିତ ହୋଇ ସାରିଛି ବୋଲି ସେ ଉଲ୍ଲେଖ କରିଥିଲେ ।

---

(୩୪) De Dignitate Augmentis Scientiarum

ସାହିତ୍ୟ ଆଲୋଚନାରେ ବ୍ୟୁତ୍ପତ୍ତି, ବୈଜ୍ଞାନିକ ଗବେଷଣାରେ ଆଗ୍ରହ ଓ ଦର୍ଶନର ଆଭିମୁଖ୍ୟ ପରିବର୍ତ୍ତନରେ ଆନ୍ତରିକତା ହେତୁ ବିଶ୍ୱର ମହାନ୍ ମାନବମାନଙ୍କ ମଧ୍ୟରେ ବେକନ୍‌ଙ୍କର ସ୍ଥାନ ସୁରକ୍ଷିତ । କିନ୍ତୁ ପ୍ରଲୋଭନର ଆକର୍ଷଣକୁ ପ୍ରତିହତ କରିବା ଏବଂ ଆବଶ୍ୟକ ସ୍ଥଳେ ସତ୍ୟ ଓ ନ୍ୟାୟକୁ ସମର୍ଥନ କରି ସାହସର ସହିତ ବିପଦ ବରଣ କରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇ ନ ଥିଲା । ରାଜନୈତିକ ଜୀବନର ଅନିଶ୍ଚିତତା ଠାରୁ ଦୂରରେ ରହି ବୌଦ୍ଧିକ ବିକାଶମୂଳକ କାର୍ଯ୍ୟରେ ତାଙ୍କର ସମସ୍ତ ସମୟ ବିନିଯୁକ୍ତ ହୋଇ ପାରିଥିଲେ ମାନବ ସମାଜକୁ ସେ ଆହୁରି ଉଦ୍‌ବୁଦ୍ଧ ଓ ଉପକୃତ କରିପାରି ଥାନ୍ତେ, ଏଥିରେ ସନ୍ଦେହ ନାହିଁ ।

ଇଂରାଜୀ ଓ ଲାଟିନ୍ ଭାଷାରେ ପ୍ରଣୀତ ବେକନଙ୍କର ସମସ୍ତ ରଚନାବଳୀ, ଚିଠିପତ୍ର ତଥା ଜୀବନୀ ଗ୍ରନ୍ଥାବଳୀ ଆକାରରେ ୧୬ ଖଣ୍ଡରେ ବିଭକ୍ତ ହୋଇ ସ୍ପିଡ଼ିଂଙ୍କ (୩୪) ସମ୍ପାଦନାରେ ପ୍ରକାଶିତ ହୋଇ ଅଛି । ବେକନ୍ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅନେକ ବିଷୟରେ ଅନେକ ପୁସ୍ତକ ଲେଖିଥିଲେ ଏବଂ ତାଙ୍କର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ ମାନଙ୍କର ପୁନରାଲୋଚନା ଓ ସଂଶୋଧନ କରି ସେମାନଙ୍କର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ସଂସ୍କରଣମାନ ପ୍ରକାଶ କରିଥିଲେ । ୧୬୦୩ରେ ରଚିତ ଓ ୧୬୦୫ରେ ପ୍ରକାଶିତ ବିଜ୍ଞାନ ସମ୍ବନ୍ଧୀୟ 'ଜ୍ଞାନର ପ୍ରଗତି' ପୁସ୍ତକର ପରିବର୍ଦ୍ଧିତ ସଂସ୍କରଣ 'ବିଜ୍ଞାନ ମାନଙ୍କର ଅଭିବୃଦ୍ଧି ଓ ମହତ୍ତ୍ୱ' ନାମରେ ୧୬୨୩ରେ ପ୍ରକାଶିତ ହୋଇଥିଲା । ବୈଜ୍ଞାନିକ ଜ୍ଞାନ ଆହରଣର ପଦ୍ଧତି-ସମ୍ବନ୍ଧୀୟ ତର୍କଶାସ୍ତ୍ର, 'ନୂତନ ସାଧନ' ପୁସ୍ତକର ପ୍ରାଥମିକ ରଚନା ୧୬୦୭ରେ ସମାପ୍ତ ହୋଇଥିଲା । କିନ୍ତୁ ଏହାକୁ ସେ ଦ୍ୱାଦଶ ବାର ପୁନର୍ଲିଖନ କରି ପରିଶେଷରେ ୧୬୨୦ରେ ମୁଦ୍ରଣ ନିମିତ୍ତ ଅନୁମତି

(୩୪) J. Speeding (Ellis and Heath London) Works—7 vols. •Life & Letters—7 vols, Life and Time—2 vols.

ଦେଇଥିଲେ । ତାଙ୍କର ସାହିତ୍ୟ ଓ ନୀତିଶାସ୍ତ୍ର-ସମ୍ବନ୍ଧୀୟ ପୁସ୍ତକ 'ସନ୍ଦର୍ଭ' ୧୫୯୭ ଖ୍ରୀଷ୍ଟାବ୍ଦରେ ମାତ୍ର ୧୦ ଗୋଟି ପ୍ରବନ୍ଧର ସମାହାର ରୂପେ ପ୍ରକାଶିତ ହୋଇଥିଲା । ନୂତନ ସଂସ୍କରଣ ମାନଙ୍କରେ ଏହାର କଳେବର ଧୀରେ-ଧୀରେ ବୃଦ୍ଧି ପାଇ ୧୬୨୫ର ସଂସ୍କରଣରେ ଏହା ପ୍ରଥମ ସଂସ୍କରଣର ପାଞ୍ଚଗୁଣରୁ ଅଧିକ ହୋଇ ସାରି ଥିଲା । ସେଲ୍ବିଙ୍କ ସମ୍ପାଦନାରେ ୧୮୮୯ରେ ପ୍ରକାଶିତ 'ବେକନ୍ଙ୍କ ସନ୍ଦର୍ଭ' (ଟୀକା) ପୁସ୍ତକରେ ୫୮ଟି ପ୍ରବନ୍ଧ ଓ ଅନ୍ୟ ଏକ ପ୍ରବନ୍ଧର ଏକ ଅସମାପ୍ତ ଅଂଶ ସନ୍ନିବେଶିତ ହୋଇଥିଲା ।

ବେକନ୍ ନିଜର କାର୍ଯ୍ୟାବଳୀର ଆବଶ୍ୟକତା ଓ ରୂପରେଖ ସମ୍ବନ୍ଧୀୟ ଆଲୋଚନା ତାଙ୍କର 'ମହତ୍ ନବୀକରଣ' ପୁସ୍ତକରେ କରିଥିଲେ । ଏହା ପୂର୍ବରୁ ତାଙ୍କର କେତେକ ପୁସ୍ତକ ପ୍ରକାଶିତ ହୋଇ ସାରିଥିଲା । କିନ୍ତୁ ଏହି ପୁସ୍ତକରେ ହିଁ ସେ ତାଙ୍କର କାର୍ଯ୍ୟକ୍ରମର ଏକ ବାଧ୍ୟବଦ୍ଧ ଯୋଜନା ଉପସ୍ଥାପିତ କରିଥିଲେ । ତେଣୁ ତାଙ୍କର ବିଜ୍ଞାନ ଓ ଦର୍ଶନ ସମ୍ବନ୍ଧୀୟ ସମସ୍ତ ରଚନାବଳୀ ମହତ୍ ନବୀକରଣରେ ବର୍ଣ୍ଣିତ ଉଦ୍ଦେଶ୍ୟର ପରିପୂରଣ ନିମିତ୍ତ କରାଯାଇ ଥିଲା ବୋଲି କୁହାଯାଇପାରେ ।

---

(ଟୀକା) 'Bacon's Essays' edited by F. G Selby·



## ଦ୍ୱିତୀୟ ପରିଚ୍ଛେଦ

# ମହତ୍ ନବୀକରଣ

ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସାହିତ୍ୟ, ଦର୍ଶନ ଓ ବିଜ୍ଞାନ କ୍ଷେତ୍ରରେ ଏକ ଅନିଶ୍ଚିତ ଅବସ୍ଥାର ସୃଷ୍ଟି ହୋଇଥିଲା । ଏହି ସମୟର ବୌଦ୍ଧିକ କାର୍ଯ୍ୟକଳାପରେ ମଧ୍ୟଯୁଗର ଓ ଆଧୁନିକ ଯୁଗର ଭାବଧାରା ଏପରି ଭାବରେ ସମ୍ମିଶ୍ରିତ ଯେ ତାହାକୁ ନିର୍ଦ୍ଧାରିତ ଭାବେ କୌଣସି ଗୋଟିଏ ଯୁଗର ବୋଲି କୁହାଯାଇ ନ ପାରେ ।

ଅଷ୍ଟମ ହେନେରୀ ବା ଷଷ୍ଠ ଏଡୱାର୍ଡ଼ଙ୍କ ସମୟରେ ଶିକ୍ଷିତ ବୋଲି ପରିଗଣିତ ହେବା ନିମନ୍ତେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଗ୍ରୀକ୍ ଓ ଲାଟିନ୍ ଭାଷା ଜାଣିବାକୁ ପଡୁଥିଲା । ଏହି ଭାଷା ଦ୍ୱୟରେ ଅନଭିଜ୍ଞ ବ୍ୟକ୍ତି ପକ୍ଷରେ ଧର୍ମ, ଦର୍ଶନ, ବିଜ୍ଞାନ, ରାଜନୀତି ଇତ୍ୟାଦି କୌଣସି ବିଷୟରେ ସମ୍ୟକ୍ ଜ୍ଞାନ ଅର୍ଜନ କରିବା ସମ୍ଭବପର ହେଉ ନ ଥିଲା । ଗ୍ରୀକ୍ ପଣ୍ଡିତ ମାନଙ୍କର ପୁସ୍ତକ ଅନୂଦିତ ଅଥବା ଲାଟିନ୍‌କୁ ଭାଷାନ୍ତରିତ ହେଉଥିଲା । ସମସ୍ତ ଉପାଦେୟ ଗ୍ରନ୍ଥ ଲାଟିନ୍ ଭାଷାରେ ହିଁ ଲିଖିତ ହେଉଥିଲା । ବିଦ୍ୟାଳୟ ମାନଙ୍କରେ ଲାଟିନ୍ ଭାଷା ଉପରେ ଗୁରୁତ୍ୱ ଅର୍ପଣ କରାଯାଉଥିଲା । କୋର୍ଟ, କଚେରୀର କାର୍ଯ୍ୟ ଲାଟିନ୍ ଭାଷାରେ ପରିଚାଳିତ ହେଉଥିଲା ଏବଂ ଆନ୍ତର୍ଦେଶୀୟ ଭାବ-ବିନିମୟ ଲାଟିନ୍ ଭାଷାରେ ହିଁ କରାଯାଉଥିଲା । ଇତାଲୀୟ ସାହିତ୍ୟ ବ୍ୟତୀତ ଇଂରାଜୀ, ଫରାସୀ, ଜର୍ମାନ ଇତ୍ୟାଦି ସାହିତ୍ୟର ବିକାଶ ଘଟି ନ

ଥିଲା । କିନ୍ତୁ କ୍ରମେ କ୍ରମେ ଜନସାଧାରଣ ଏହି ଅଭାବ ବିଷୟରେ ସଚେତନ ହୋଇ ଉଠୁଥିଲେ । ଯେଉଁ ସାହିତ୍ୟିକମାନେ ଏହି ଅଭାବ ପୂରଣ କରିବା ନିମିତ୍ତ ଆଗଭର ହୋଇ ପ୍ରାଦେଶିକ ଭାଷାରେ ସଫଳ ସାହିତ୍ୟ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ, ସେମାନଙ୍କ ମଧ୍ୟରେ ଫ୍ରାନସରେ ମନଟେନ୍, ସ୍ପେନରେ ସାରଭାଣ୍ଟିସ୍ ଏବଂ ଇଂଲଣ୍ଡରେ ସେକ୍ସପିଅର୍ (୧) ଅନ୍ୟତମ ।

ଏହି ସମୟରେ ହିଁ ଧର୍ମକ୍ଷେତ୍ରରେ ପୋପ୍‌ଙ୍କ ପ୍ରଭାବ କ୍ରମେ କ୍ରମେ କ୍ଷୁଣ୍ଣ ହୋଇ ଆସିଲା । ମାର୍ଟିନ୍ ଲୁଥର (୨) ଜର୍ମାନୀରେ ପ୍ରୋଟେଷ୍ଟାଣ୍ଟ ଧର୍ମମତର ପ୍ରଚାର କଲେ ଏବଂ ଅନ୍ୟାନ୍ୟ ଦେଶକୁ ମଧ୍ୟ ଏହା ପ୍ରସାରିତ ହେଲା । ଖ୍ରୀଷ୍ଟଧର୍ମ ଦ୍ୱାରା ପ୍ରଭାବିତ ଦର୍ଶନର ଅସାରତା ଉପଲବ୍ଧ ହୋଇ ଖ୍ରୀଷ୍ଟ ଧର୍ମର ପୂର୍ବବର୍ତ୍ତୀ ଦର୍ଶନ ଆଡକୁ ଚିନ୍ତାଶୀଳ ବ୍ୟକ୍ତିମାନେ ଆକୃଷ୍ଟ ହେଉଥିଲେ । ଫେରାରା ଏବଂ ଫ୍ଲୋରେନସ୍‌ରେ ଧର୍ମର ଏକୀକରଣ ନିମିତ୍ତ ୧୪୩୮ ଖ୍ରୀଷ୍ଟାବ୍ଦରେ ବସିଥିବା ସମ୍ମିଳନୀକୁ ପ୍ଲିଥୋ ଏବଂ ବେସାରିଅନ୍‌ଙ୍କ (୩) ପରି ଗ୍ରୀକ୍ ପଣ୍ଡିତମାନେ ଆହୂତ ହୋଇଥିଲେ । ୧୪୫୩ ଖ୍ରୀଷ୍ଟାବ୍ଦରେ ତୁର୍କୀମାନଙ୍କ ଦ୍ୱାରା କନ୍‌ଷ୍ଟାଣ୍ଟିନୋପଲ୍ ଅଧିକୃତ ହେବା ପରେ ଅନ୍ୟ କେତେକ ଗ୍ରୀକ୍ ପଣ୍ଡିତ ମଧ୍ୟ ସ୍ୱଦେଶ ପରିତ୍ୟାଗ କରି ୟୁରୋପର ବିଭିନ୍ନ ସ୍ଥାନରେ ବାସ କରିବାକୁ ଲାଗିଲେ । ଏମାନଙ୍କ ଦ୍ୱାରା ପ୍ଲେଟୋ ଏବଂ ଆରିଷ୍ଟୋଟଲ୍‌ଙ୍କ ଦର୍ଶନ [illegible] ପ୍ରଚାରିତ ଓ ପ୍ରସାରିତ

(୧) Michel Eyquem de Montaigne (1533-1592) Vide "Essays"

Miguel de Cervantes Savedre (1547-1616) Vide "Don Quixote"

William Shakespeare (1564-1616) Vide his plays.

(୨) Martin Luthar (1483-1546)

(୩) Pletho (1355-1450) Bessarion (1395-1472)

ହେଲା । ଏହି ସମୟରେ ଉଚିତ ଦର୍ଶନ ସମ୍ବନ୍ଧୀୟ ଗ୍ରନ୍ଥମାନଙ୍କରେ ପ୍ଲେଟୋ ଆରିଷ୍ଟୋଟଲ୍‌ଙ୍କ ଏବଂ ଖ୍ରୀଷ୍ଟଧର୍ମର ବକ୍ତବ୍ୟ ମଧ୍ୟରେ ବିଶେଷ କୌଣସି ମୌଳିକ ପ୍ରଭେଦ ନାହିଁ ବୋଲି ପ୍ରଦର୍ଶନ କରା ଯାଉଥିଲା । ଏତଦ୍ ବ୍ୟତୀତ ପ୍ଲେଟୋଙ୍କ ଦର୍ଶନରେ ଇହୁଦୀ କବାଲାମାନଙ୍କର ଗୁପ୍ତ ତଥ୍ୟ (୪) ନିହିତ ବୋଲି ଜନ ପିକୋ, ଫ୍ରାନ୍ସିସ୍ ପିକୋ ଓ ଜୋହାନ୍ ରସ୍କଲିନ୍ (୫) ଦାବୀ କରୁଥିବା ସ୍ଥଳେ ଏଥିରେ ପ୍ରାଚ୍ୟ ଯାଦୁବିଦ୍ୟାର ମୂଳମନ୍ତ୍ର ରହିଛି ବୋଲି କର୍ଣ୍ଣେଲିଅସ୍ ଏଗ୍ରିପା (୬) ଦାବୀ କରୁଥିଲେ । ପ୍ଲେଟୋ ଓ ଆରିଷ୍ଟୋଟଲ୍‌ଙ୍କ ଦର୍ଶନ ବ୍ୟତୀତ ଲିପସିଅସ୍, ସୋପ (୭) ଇତ୍ୟାଦିଙ୍କ ଦ୍ୱାରା ଷ୍ଟୋଇକ୍ ଦର୍ଶନ, ଗେସେଣ୍ଡି (୮)ଙ୍କ ଦ୍ୱାରା ଏପିକ୍ୟୁରସ୍‌ଙ୍କ ଦର୍ଶନ, ଏପରି କି କେତେ ଜଣଙ୍କ ଦ୍ୱାରା ସିସେରୋ, କୁଇଣ୍ଟିଲିଅନ୍ (୯)ଙ୍କ ଦର୍ଶନ ମଧ୍ୟ ତତ୍କାଳୀନ ଆଲୋଚନାରେ ସ୍ଥାନ ପାଇଥିଲା । କିନ୍ତୁ ଏକ ଦିଗରେ ପୁରାତନ ଦାର୍ଶନିକମାନଙ୍କ ପ୍ରତି ଶ୍ରଦ୍ଧା ଯେପରି ବୃଦ୍ଧି ପାଉଥିଲା, ଅନ୍ୟ ଦିଗରେ ସେମାନଙ୍କ ଦର୍ଶନର ଦୋଷ, ତ୍ରୁଟି ତଥା ଅନୁପଯୁକ୍ତତା ମଧ୍ୟ ସେହିପରି ଦୃଢ଼ କଣ୍ଠରେ ଘୋଷିତ ହେଉଥିଲା । ଆରିଷ୍ଟୋଟଲ୍‌ଙ୍କ ଦର୍ଶନକୁ ଯୁଗୋପଯୋଗୀ କରିବା ନିମିତ୍ତ ଭିନ୍ନ ଭିନ୍ନ ଗୋଷ୍ଠୀ ଭିନ୍ନ ଭିନ୍ନ ଭାବେ ଅର୍ଥ

---

(୪) Secret doctrine of the Jewish Cabala

(୫) John Pico (1463-1494)
Francis Pico (died-1533)
Johann Recuhlin (1455-1522)

(୬) Cornelius Agrippa (1487-1535)

(୭) Justus Lipsius (1547-1606)
Caspar Schoppe (1576-1649)

(୮) Petrus Gassendi (1592-1655)

(୯) Marcus Tullius Cicero (106 B.C-43B.C)
Quintilian (40-100)

କରୁଥିଲେ । ପୁଣି ରେମସ୍, ଟୌରେଲସ୍ (୧୦) ପ୍ରଭୃତି ଦାର୍ଶନିକ ଗଣ ଆରିଷ୍ଟୋଟଲଙ୍କ ତର୍କପଦ୍ଧତି ଓ ଦର୍ଶନ ବିଭ୍ରାନ୍ତିକର ବୋଲି ପ୍ରତିପାଦନ କରିବାକୁ ପ୍ରୟାସ ମଧ୍ୟ କରିଥିଲେ । ଏତଦ୍‌ବ୍ୟତୀତ ଏହି ସମୟରେ ପାରାସେଲ୍‌ସସ୍, କାର୍ଡେନସ୍, ଟେଲେସିଅସ୍, ପେଟ୍ରିସିଅସ୍, କାମ୍ପାନେଲା, ବ୍ରୁନୋ (୧୧) ପ୍ରଭୃତି କେତେକ ଦାର୍ଶନିକ ମଧ୍ୟଯୁଗୀୟ ଧର୍ମର ପ୍ରଭାବରୁ ସଂପୂର୍ଣ୍ଣଭାବେ ବିମୁକ୍ତ ହୋଇ ପାରି ନଥିଲେ ମଧ୍ୟ ଦର୍ଶନକୁ ପ୍ରକୃତ ପର୍ଯ୍ୟବେକ୍ଷଣ ଓ ବିଜ୍ଞାନ ଉପରେ ପ୍ରତିଷ୍ଠିତ କରିବାକୁ ଚେଷ୍ଟା କରିଥିଲେ । ସଂକ୍ଷେପରେ କହିବାକୁ ଗଲେ ଏହି ସମୟର ଦାର୍ଶନିକ ଚିନ୍ତାଧାରା କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ପରିଚାଳିତ ହେଉ ନ ଥିଲା । ନାନା ଗୋଷ୍ଠୀ ନାନା ମତବାଦର ସୃଷ୍ଟି ହୋଇ କଳହ, କନ୍ଦଳର ମାତ୍ରା ବୃଦ୍ଧି ପାଉଥିଲା । ଉପସ୍ଥିତ ପରିସ୍ଥିତିରେ କେହି ସନ୍ତୁଷ୍ଟ ନ ଥିଲେ; କିନ୍ତୁ ଏହି ଅସନ୍ତୋଷ । ଜନଙ୍କ ଅନ୍ତର ତଳୁ ସିମାନ ଭିତରେ ଅବ୍ୟାହତ ମିଳିବ, ତାହାର କୌଣସି ନିର୍ଦ୍ଦିଷ୍ଟ ସୂଚନା ମଧ୍ୟ ମିଳି ନ ଥିଲା ।

ଏହି ସମୟର ବିଜ୍ଞାନ କ୍ଷେତ୍ରରେ ମଧ୍ୟ କୌଣସି ସ୍ଥିରତା ଆସି ନ ଥିଲା । ଭାସ୍କୋଡ଼ାଗାମା, କଲମ୍ବସ୍, ଭେସ୍‌ପୁସିଅସ୍, କେବଟ,

(୧୦) Petrus Ramus (1515-1572)
Nicholaus Taurellus (1547 1606)

(୧୧) Paracelsus (1493-1541)
Hieronymus Cardanus (1500 1576)
Bernhardinus Telesius (1508-1588)
Francesco Patritius (1529-1593)
Thomas Campanella (1568 1639)
Giordano Bruno (1548 1600)

ବାଲବୋଆ, ମେଗେଲେନ, ଡ୍ରେକ୍‌ (୧୨) ଇତ୍ୟାଦି ଆବିଷ୍କାରକ ମାନେ ନୂତନ ଜଳପଥ ଓ ନୂତନ ଦେଶର ଆବିଷ୍କାର କରିବା ଦ୍ୱାରା ୟୁରୋପୀୟ ମାନଙ୍କର ପୃଥିବୀ ସମ୍ବନ୍ଧୀୟ ଧାରଣାରେ ପରିବର୍ତ୍ତନ ଘଟିଥିଲା । ମର୍କେଟର, ଅର୍ଟେଲିଅସ୍‌ (୧୩) ଇତ୍ୟାଦି ନୂତନ ଭାବେ ପୃଥିବୀର ମାନଚିତ୍ର ଅଙ୍କନ କଲେ । କୋପର୍ନିକସ୍‌ (୧୪) ଗ୍ରୀକ୍‌ ବୈଜ୍ଞାନିକ ଟଲେମିଙ୍କ ଭୂକେନ୍ଦ୍ରୀୟ ତଥ୍ୟକୁ ମିଥ୍ୟା ବୋଲି ପ୍ରତିପାଦନ କରି ତାଙ୍କର ସୂର୍ଯ୍ୟକେନ୍ଦ୍ରୀୟ ତଥ୍ୟ ପରିବେଷଣ କଲେ । କିନ୍ତୁ ଏହି ନୂତନ ତଥ୍ୟ ବୈଜ୍ଞାନିକ ଦୃଷ୍ଟିକୋଣରୁ ଯଥାର୍ଥ ବୋଲି ବିବେଚିତ ହେବା ସପକ୍ଷରେ ଯଥେଷ୍ଟ ସାକ୍ଷ୍ୟପ୍ରମାଣ ରହିଥିଲେ ମଧ୍ୟ ଧର୍ମ ବିଦ୍ରୋହୀ ବୋଲି ପରିଗଣିତ ହେବା ଭୟରେ ଏହି ତଥ୍ୟ ସମ୍ବଳିତ ପୁସ୍ତକ ପ୍ରକାଶ କରିବା ନିମିତ୍ତ ନାନା ବାଧାବିଘ୍ନ ଉପୁଜି ଥିଲା । ଖ୍ରୀଷ୍ଟଧର୍ମାବଲମ୍ବୀମାନେ ମାନବର ଆବାସସ୍ଥଳୀ ପୃଥିବୀ ବିଶ୍ୱର କେନ୍ଦ୍ର ହେବା ସ୍ୱାଭାବିକ ଓ ସତ୍ୟ ବୋଲି ବିଶ୍ୱାସ କରୁଥିଲେ । ତେଣୁ ପୃଥିବୀକୁ ସୂର୍ଯ୍ୟର ଗ୍ରହ ଏବଂ ଏହା ସୂର୍ଯ୍ୟକୁ ପ୍ରଦକ୍ଷିଣ କରେ ବୋଲି କହିବା କେବଳ ମିଥ୍ୟା ନୁହେଁ ଧର୍ମ ବିରୁଦ୍ଧ ବୋଲି ମନେକରା ଯାଉଥିଲା । ଧର୍ମ ବିରୁଦ୍ଧ କାର୍ଯ୍ୟ କଲେ ସେତେବେଳେ କେତେକ ଦେଶର ପ୍ରଚଳିତ ନିୟମାନୁସାରେ ପୋଡ଼ି ମାରିଦେବା ପାଇଁ ବ୍ୟବସ୍ଥା ରହିଥିଲା । ଦାର୍ଶନିକ ବ୍ରୁନୋ ସୂର୍ଯ୍ୟ

---

(୧୨) Vasco da Gama (1469-1524)
Christopher Columbus (1451 1506)
Americus Vespucius (1451 1512)
John Cabot (1450-1498)
Vasco Nunez de Balboa (1475 1517)
Ferdinand Magellan (1480-1521)
Sir Francis Drake (1545-1596)

(୧୩) Gerardus Mercator (1512-1594)
Abraham Ortelius (15 7-1598)

(୧୪) Nicolaus Copernicus (1473-1543)

କେନ୍ଦ୍ରୀୟସ୍ଥ ତଥ୍ୟକୁ ସତ୍ୟ ବୋଲି ଗ୍ରହଣ କରିବା ଏବଂ ପ୍ରଚଳିତ ଧର୍ମମତର ବହିଷ୍କାଚରଣ କରି ବିଜ୍ଞାନଭିତ୍ତିକ ଦାର୍ଶନିକ ମତାମତ ପ୍ରକାଶକରିବା ହେତୁ ତାହାଙ୍କୁ ଧର୍ମବିଦ୍ରୋହୀ ବୋଲି ଅଭିଯୁକ୍ତ କରି ୧୬୦୦ ଖ୍ରୀଷ୍ଟାବ୍ଦରେ ରୋମ ଠାରେ ପୋଡ଼ାଇ ମାରିଦିଆ ଯାଇଥିଲା ।

ଏହି ସମୟରେ ଭୂବିଜ୍ଞାନ; ଉଦ୍ଭିଦ ବିଜ୍ଞାନ, ଜୀବ ବିଜ୍ଞାନ, ଧାତୁ ବିଜ୍ଞାନ ଓ ଜ୍ୟୋତିର୍ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ମଧ୍ୟ କେତେକ ନୂତନ ଆବିଷ୍କାର କରା ଯାଇଥିଲା । ଏଗ୍ରିକୋଲା (୧୫) ନୂତନ ଯନ୍ତ୍ରପାତି ସାହାଯ୍ୟରେ ଗବେଷଣା କରି ଭୂମଧ୍ୟସ୍ଥ ଧାତବ ପଦାର୍ଥ କିପରି ଭାବରେ ଉଦ୍ଧାର କରାଯାଇ ପାରିବ ତାହାର ବର୍ଣ୍ଣନା ଦେଇଥିଲେ । ଗେସନର (୧୬) ବିବିଧ ପ୍ରକାର ଉଦ୍ଭିଦ ଓ ଜୀବଜନ୍ତୁ ମାନଙ୍କ ସମ୍ବନ୍ଧରେ ଆଲୋଚନା କରି ଏକ ବିସ୍ତୃତ ତାଲିକା ପ୍ରସ୍ତୁତ କରିଥିଲେ । ଗିଲବର୍ଟ (୧୭) ଚୁମ୍ବକ ପ୍ରସ୍ତର ଓ ଆକର୍ଷଣୀୟ ଶକ୍ତି ସମ୍ବନ୍ଧରେ ଗବେଷଣା କରି ବିଶେଷ ସାଫଲ୍ୟ ଅର୍ଜନ କରିଥିଲେ । ସେ ହିଁ ପ୍ରଥମେ ଏହି ଆକର୍ଷଣୀ ଶକ୍ତିକୁ ବ୍ୟକ୍ତ କରିବା ନିମିତ୍ତ ଲାଟିନ୍‌ର 'ଇଲେକ୍‌ଟ୍ରିକା' ବା ଇଂରାଜୀର 'ଇଲେକ୍‌ଟ୍ରିସିଟି' ଶବ୍ଦର ପ୍ରୟୋଗ କରିଥିଲେ । ବ୍ରାହେ (୧୮) ଡେନମାର୍କର ରାଜାଙ୍କ ପୃଷ୍ଠପୋଷକତାରେ ସେହି ସମୟର ସର୍ବୋତ୍କୃଷ୍ଟ ମାନମନ୍ଦିର ହ୍ୱେନ୍ ଦ୍ୱୀପରେ ନିର୍ମାଣ କରାଇଥିଲେ । ନୂତନ ଧରଣର ଯନ୍ତ୍ରପାତି ବ୍ୟବହାର କରି ଏହି ମାନମନ୍ଦିରରୁ ପର୍ଯ୍ୟବେକ୍ଷଣ କରିବା ଦ୍ୱାରା ସେ ୭୭୭ଟି ନକ୍ଷତ୍ରର ସଠିକ୍ ସ୍ଥିତି ନିରୂପଣ କରି ପାରିଥିଲେ । ଗ୍ରହମାନେ ସୂର୍ଯ୍ୟକୁ ପ୍ରଦକ୍ଷିଣ କରନ୍ତି, କିନ୍ତୁ ସୂର୍ଯ୍ୟ ପୃଥିବୀକୁ ପ୍ରଦକ୍ଷିଣ କରେ ଏବଂ ପୃଥିବୀ ସ୍ଥିର ଅଟେ ବୋଲି ବ୍ରାହେ ବିଶ୍ୱାସ କରୁଥିଲେ । ମୃତ୍ୟୁ ଶଯ୍ୟାରେ ସେ ତାଙ୍କ ଦ୍ୱାରା

---

(୧୫) Georgius Agricola (1494 1555)

(୧୬) Konrad Von Gesner (1516-1565)

(୧୭) William Gilbert (1540-1603)

(୧୮) Tycho Brahe 1546-1601)

ଆବିଷ୍କୃତ ଗ୍ରହ-ନକ୍ଷତ୍ରବିଷୟକ ସମସ୍ତ ତଥ୍ୟ ସହକର୍ମୀ କେପଲର (୧୯)ଙ୍କ ହସ୍ତରେ ଅର୍ପଣ କରି ଶପଥ କରାଇ ନେଇଥିଲେ ଯେ ସେ (କେପଲର୍) ଯେପରି ସେହି ତଥ୍ୟ ସାହାଯ୍ୟରେ ଟ୍ରାହେଙ୍କ ମତ ଭ୍ରାନ୍ତ ଏବଂ କୋପର୍ନିକସ୍ଙ୍କ ମତହିଁ ଠିକ୍ ବୋଲି ଜଗତ ସମକ୍ଷରେ ଉପସ୍ଥାପିତ କରନ୍ତୁ ।

ଶରୀରର ଆଭ୍ୟନ୍ତରୀଣ ଗଠନ ସମ୍ବନ୍ଧରେ ୨ୟ ଶତାବ୍ଦୀରେ ଲିଖିତ ଗ୍ରୀକ୍ ଚିକିତ୍ସକ ଗେଲେନ୍ (୨୦)ଙ୍କ ଗ୍ରନ୍ଥ ଏହି ସମୟ ପର୍ଯ୍ୟନ୍ତ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ହୋଇ ଆସୁଥିଲା । କିନ୍ତୁ ଏହି ଗ୍ରନ୍ଥରେ ଅନେକ ଭୁଲ ଭ୍ରାନ୍ତି ରହିଛି ବୋଲି ଭେସାଲିୟସ୍ (୨୧) ପ୍ରଦର୍ଶନ କରିଥିଲେ । ଶବ ବ୍ୟବଚ୍ଛେଦ କରିବା ଏକ ଗର୍ହିତ କାର୍ଯ୍ୟ ବୋଲି ବିବେଚିତ ହେଉଥିଲେ ମଧ୍ୟ ସେ ଗୁପ୍ତ ଭାବରେ ଏହି କାର୍ଯ୍ୟ କରୁଥିଲେ ଏବଂ ମନୁଷ୍ୟ ଶରୀରରେ ଅସ୍ତ୍ରୋପଚାର ନାପିତମାନଙ୍କ ଦ୍ୱାରା କରାଇବାର ପ୍ରଥା ରହିଥିଲେ ମଧ୍ୟ ସେ ନିଜେ ଏହି କାର୍ଯ୍ୟ ସମ୍ପାଦନ କରୁଥିଲେ । ଏଥିନିମିତ୍ତ ତାହାଙ୍କୁ ନାନାଭାବରେ ନିର୍ଯ୍ୟାତିତ ହେବାକୁ ପଡ଼ିଥିଲା । ଭେସାଲିଅସ୍ଙ୍କ ପରେ ଫେଲୋପିଅସ୍, ଫେବ୍ରିସିଅସ୍, ହାରଭେ, ପେଆରେ (୨୨) ପ୍ରଭୃତି ଶଲ୍ୟଚିକିତ୍ସକମାନେ ମନୁଷ୍ୟ ଶରୀରର ଆଭ୍ୟନ୍ତରସ୍ଥ ଗଠନ ଓ ବିଭିନ୍ନ ଅଂଶର କାର୍ଯ୍ୟ ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ପରିବେଷଣ କରିଥିଲେ । କିନ୍ତୁ ତଥାପି ଏହି ଜ୍ଞାନର ଉପଯୋଗିତା ଚିକିତ୍ସା ବିଜ୍ଞାନର ଅନ୍ୟାନ୍ୟ ବିଭାଗକୁ ସଂପ୍ରସାରିତ ହେବା ପରିବର୍ତ୍ତେ ରୋଗର କାରଣ ନିର୍ଣ୍ଣୟ ଓ

(୧୯) John Kepler (1571-1630)
(୨୦) Galen (130-201)
(୨୧) Andreas Vesalius (1514-1563)
(୨୨) Gabriel Fallopius (1523-1562)
Hieronymus Fabricius (1537-1619)
William Harvey (1578-1657)
Ambroise Pare (1510-1590)

ଚିକିତ୍ସା ବିଧାନ କ୍ଷେତ୍ରରେ ନାନା ଅନ୍ଧ ବିଶ୍ୱାସ ଓ ଅନ୍ଧ ସଂସ୍କାର ପୂରି ରହିଥିଲା ।

ବୈଜ୍ଞାନିକ ପଦ୍ଧତିରେ ରସାୟନ ବିଜ୍ଞାନର ଗବେଷଣା ଏହି ସମୟ ପର୍ଯ୍ୟନ୍ତ ଆରବ୍ଧ ହୋଇ ନ ଥିଲା । ରବର୍ଟ ବୟଲ (୧୩) ଙ୍କ ରସାୟନ ଶାସ୍ତ୍ର (୧୪) ୧୬୬୧ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା ଏବଂ ରସାୟନ ବିଜ୍ଞାନର ଆଭିମୁଖ୍ୟ ପରିବର୍ତ୍ତିତ ହୋଇ ଯାଇଥିଲା । ଏହି ସମୟଠାରୁହିଁ ରସାୟନ ବିଜ୍ଞାନକୁ ଯଥାର୍ଥରେ ବିଜ୍ଞାନ ଆଖ୍ୟା ଦିଆଯାଇ ପାରେ । ତତ୍-ପୂର୍ବରୁ ଏହା ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆଲକେମି ବା କିମିଆଁ ବିଦ୍ୟା ଭାବରେ ରହି ଥିଲା । ଆଲକେମି ହେଉଛି ବିଜ୍ଞାନ, ଧର୍ମ, ଦର୍ଶନ, ତନ୍ତ୍ର, କୁହୁକ ବିଦ୍ୟା ଓ ଅନ୍ଧବିଶ୍ୱାସର ଏକ ବିଚିତ୍ର ସମ୍ମିଶ୍ରଣ । ମଧ୍ୟ ଯୁଗରେ ଆରବ ଦେଶର ଜେବର (୧୫) ଏବଂ ଇଂଲଣ୍ଡର ରୋଜର ବେକନ୍ (୧୬) ଏହି ବିଦ୍ୟାରେ ପ୍ରସିଦ୍ଧି ଲାଭ କରିଥିଲେ । ଏହି ବିଦ୍ୟାରେ ସଫଳତା ଅର୍ଜନ କରି ପାରିଲେ ଯେ କୌଣସି ନିମ୍ନ ଧରଣର ଧାତବ ଦ୍ରବ୍ୟକୁ ସ୍ୱର୍ଣ୍ଣ କରାଯାଇ ପାରିବ ବୋଲି ବିଶ୍ୱାସ କରାଯାଉ ଥିଲା । ଯେଉଁ ଦ୍ରବ୍ୟ ସାହାଯ୍ୟରେ ଏହା ସମ୍ଭବପର ତାହାକୁ 'ଦାର୍ଶନିକର ପ୍ରସ୍ତର' (୧୭) ଆଖ୍ୟା ଦିଆଯାଇ ଥିଲା ଏବଂ ତାହା ଆବିଷ୍କାର କରିବା ନିମିତ୍ତ ବହୁବର୍ଷ ଧରି ନାନା ପ୍ରକାରର ପରୀକ୍ଷା ନିରୀକ୍ଷା ଅବ୍ୟାହତ ରହିଥିଲା । 'ଦାର୍ଶନିକର ପ୍ରସ୍ତର' ଆବିଷ୍କୃତ ନ ହୋଇ ପାରିବା ସ୍ୱାଭାବିକ, କିନ୍ତୁ ଏହାର ଅନ୍ୱେଷଣ ନିମିତ୍ତ ପ୍ରଯୋଜିତ ଗବେଷଣା ଗୁଡ଼ିକରୁ ଅନ୍ତତଃ ଗୋଟିଏ ସୁଫଳ ମିଳିଥିଲା । ଏହି ଗବେଷକମାନେ ଅସଂଖ୍ୟ ପ୍ରକାରର ବସ୍ତୁରେ ବିବିଧ ପ୍ରଣାଳୀ ପ୍ରୟୋଗ

---

(୧୩) Robert Boyle [1627-1691]

(୧୪) 'Sceptical Chymist'

(୧୫) Jabir or Geber (8th or 9th century)

(୧୬) Roger Bacon (1214-1294)

(୧୭) Philosopher's Stone

କରି ପରୀକ୍ଷା, ନିରୀକ୍ଷା କରୁଥିଲେ । ଏତଦ୍ୱାରା ଅନେକ ପ୍ରକାର ରାସାୟନିକ ଦ୍ରବ୍ୟ ଓ ଔଷଧ ଆବିଷ୍କୃତ ହୋଇ ପାରିଥିଲା ଏବଂ କେତେକ ବୈଜ୍ଞାନିକ ପଦ୍ଧତି ସୃଷ୍ଟିବଦ୍ଧ ହୋଇ ଯାଇଥିଲା । ପରବର୍ତ୍ତୀ କାଳରେ ପାରାସେଲ୍ସସ୍ ରୋଗ ନିବାରଣ କରିବା ନିମିତ୍ତ ଔଷଧ ଆବିଷ୍କାର କରିବା ହେଉଛି ରସାୟନ ବିଜ୍ଞାନର ଲକ୍ଷ୍ୟ ବୋଲି ନିର୍ଦ୍ଧାରଣ କରି ଦେଲେ । ତତ୍ପରେ ଏକ 'ଜୀବନାମୃତ' (୨୮) ସାହାଯ୍ୟରେ ସମସ୍ତ ପ୍ରକାର ରୋଗରୁ ମୁକ୍ତ ମିଳି ପାରିବ ଏବଂ ଯୌବନକୁ ଚିରସ୍ଥାୟୀ କରାଯାଇ ପାରିବ ବୋଲି ଲୋକଙ୍କ ମନରେ ଏକ ଧାରଣାର ସୃଷ୍ଟି ହେଲା ଏବଂ ଏହି 'ଜୀବନାମୃତ'ର ଆବିଷ୍କାର କଳ୍ପେ ପୁଣି ବହୁବର୍ଷ ଧରି ଗବେଷଣା ଚାଲିଲା ।

ଏପର୍ଯ୍ୟନ୍ତ ପଦାର୍ଥ ବିଜ୍ଞାନ ଜ୍ୟୋତିର୍ବିଜ୍ଞାନ ସହିତ ସଂଶ୍ଳିଷ୍ଟ ହୋଇ ରହିଥିଲା । ନିଉଟନ (୨୯) ବିଜ୍ଞାନ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇ ନ ଥିଲେ । ବେକନ୍‌ଙ୍କ ସମସାମୟିକ ଗାଲିଲିଓ (୩୦) ଆରିଷ୍ଟୋଟଲ୍‌ଙ୍କ ସମୟରୁ ପ୍ରଚଳିତ ଲଘୁ ଓ ଗୁରୁବସ୍ତୁ ସମ୍ବନ୍ଧୀୟ ଧାରଣା ଭ୍ରାନ୍ତ ବୋଲି ପ୍ରଦର୍ଶନ କରିଥିଲେ । ବସ୍ତୁମାନଙ୍କର ଗୁରୁତ୍ୱରେ ତାରତମ୍ୟ ଥିଲେ ମଧ୍ୟ ସେ ଗୁଡ଼ିକର କୌଣସି ଏକ ଉଚ୍ଚ ସ୍ଥାନରୁ ଅଧୋଗମନର ସମୟରେ କୌଣସି ପାର୍ଥକ୍ୟ ନ ଥାଏ ବୋଲି ସେ ପରୀକ୍ଷା କରି ଦେଖାଇ ଦେଇଥିଲେ । କିନ୍ତୁ ସେ ପର୍ଯ୍ୟନ୍ତ ମାଧ୍ୟାକର୍ଷଣ ଶକ୍ତି ବିଷୟକ ଧାରଣା ବୈଜ୍ଞାନିକମାନଙ୍କର ମନରେ ଜାତ ହୋଇ ନ ଥିଲା । ଗତିଶୀଳ ବସ୍ତୁ ବାଧାପ୍ରାପ୍ତ ନ ହେଲେ ତାହା ଅନନ୍ତକାଳ ପର୍ଯ୍ୟନ୍ତ ଗତି କରିବ ଏହି ଧାରଣା ମଧ୍ୟ ସ୍ପଷ୍ଟ ହୋଇ ନ ଥିଲା । ତେଣୁ ଗ୍ରହମାନଙ୍କର ସୂର୍ଯ୍ୟର ଚତୁର୍ଦ୍ଦିଗରେ ଘୂର୍ଣ୍ଣନ ବିଷୟ ବୁଝାଇବାକୁ କୌଣସି ନା କୌଣସି ସ୍ଥାନରେ ଗୋଟିଏ ଶକ୍ତିକେନ୍ଦ୍ର ଥିବ ବୋଲି ମନେ କରି ତାହାର

(୨୮) Elixir of life

(୨୯) Sir Isaac Newton (1642-1727)

(୩୦) Galilei Galileo (1564-1642)

ଅନ୍ୱେଷଣ କରା ଯାଉଥିଲା । ମାଧ୍ୟାକର୍ଷଣଶକ୍ତି ଓ ଗତି ସମ୍ବନ୍ଧୀୟ ସୁନିର୍ଦ୍ଦିଷ୍ଟ ନିୟମର ଆବିଷ୍କାର ପରବର୍ତ୍ତୀ କାଳରେ ନିଉଟନଙ୍କ ଦ୍ୱାରାହିଁ ସମ୍ପାଦିତ ହୋଇଥିଲା ।

ସଂକ୍ଷେପରେ କହିବାକୁ ଗଲେ ଏ ପର୍ଯ୍ୟନ୍ତ ବିଜ୍ଞାନ ଗୁଡ଼ିକର ପରିସର, ପଦ୍ଧତି, ଲକ୍ଷ୍ୟ ଓ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ଭାବେ ସ୍ଥିର ହୋଇ ନ ଥିଲା । ଧର୍ମବିଶ୍ୱାସର ବିରୋଧୀ ହୋଇଥିଲେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଲବ୍ଧ ଯୁକ୍ତିଯୁକ୍ତ ମତ ମଧ୍ୟ ପ୍ରକାଶ କରିବାକୁ ବୈଜ୍ଞାନିକମାନେ କୁଣ୍ଠିତ ହେଉଥିଲେ, କାରଣ ଏହାଦ୍ୱାରା ସେମାନଙ୍କୁ ନାନା ଭାବରେ ନିର୍ଯ୍ୟାତିତ ହେବାକୁ ପଡୁଥିଲା ।

ବିଜ୍ଞାନର ଏହି ପରିପ୍ରେକ୍ଷୀରେ ବେକନ୍‌ଙ୍କର ଆବିର୍ଭାବ ଘଟିଲା ।

ଯୁବାବସ୍ଥାରୁହିଁ ବେକନ୍ ତତ୍କାଳୀନ ବିଭିନ୍ନ ବିଜ୍ଞାନର ଅବସ୍ଥା ଓ ଅଗ୍ରଗତିରେ ସନ୍ତୁଷ୍ଟ ନ ଥିଲେ ଏବଂ ସେଗୁଡ଼ିକର ଦୋଷ ଦୁର୍ବଳତା ପ୍ରଦର୍ଶନ-ପୂର୍ବକ ସେସବୁକୁ ପୁନରୁଜ୍ଜୀବିତ କରିବା ନିମିତ୍ତ ଏକ ଅଭିନବ ଦିଗ୍‌ଦର୍ଶନର ଆବଶ୍ୟକତା ରହିଛି ବୋଲି ସର୍ବଦା ଅନୁଭବ କରୁଥିଲେ । ଅବସ୍ଥା-ଚକ୍ରରେ ପଡ଼ି ତାହାଙ୍କୁ ଆଇନ୍ ଓ ରାଜନୀତି କାର୍ଯ୍ୟରେ ବ୍ୟାପୃତ ରହିବାକୁ ପଡ଼ିଥିଲା । କିନ୍ତୁ ଏହି ସମୟରେ ମଧ୍ୟ ବିଜ୍ଞାନ ଓ ଦର୍ଶନର ସଂସ୍କାର ଆନୟନ କରିବାରେ ଯେ ତାଙ୍କର ଏକ କର୍ତ୍ତବ୍ୟ ରହିଛି ଏହି ଧାରଣା ତାଙ୍କ ମନରୁ ତିରୋହିତ ହୋଇ ନ ଥିଲା ଏବଂ ଅବସର ସମୟରେ ସେ ଏହି କାର୍ଯ୍ୟରେହିଁ ନିଜକୁ ନିୟୋଜିତ ରଖୁଥିଲେ ।

ବେକନ୍‌ଙ୍କ ମତରେ ସାଧାରଣତଃ ମନୁଷ୍ୟ ନିଜର ସାମର୍ଥ୍ୟ ଓ ଶକ୍ତିର ଯଥାଯଥ କଳନା କରିପାରେ ନାହିଁ । ନିଜର ସମ୍ପତ୍ତିକୁ ସର୍ବଶ୍ରେଷ୍ଠ ବୋଲି ଭାବି ତାହାର ଅଗ୍ରଗତି ସାଧନ କରିବାକୁ ସେ ଯେପରି ପରାଙ୍ମୁଖ, ନିଜର ଶକ୍ତି ଉପରେ ଆସ୍ଥା ନ ଥିବାରୁ ତାହାକୁ (ନିଜ ଶକ୍ତିକୁ) ଉପାଦେୟ

କର୍ମରେ ନିୟୋଜିତ କରିବା ନିମିତ୍ତ ସେ ସେହିପରି ପରାଙ୍ମୁଖ । ତାଙ୍କ ସମୟ ପର୍ଯ୍ୟନ୍ତ ଲେଖାଯାଇ ଥିବା ସମସ୍ତ କଳା ଓ ବିଜ୍ଞାନ-ସମ୍ବନ୍ଧୀୟ ପୁସ୍ତକ ସଂଖ୍ୟାଦୃଷ୍ଟିରୁ ଅଗଣିତ ହୋଇଥିଲେ ମଧ୍ୟ ତହିଁରେ ଅଳ୍ପ କେତୋଟି ତଥ୍ୟର ପୁନରାବୃତ୍ତି ମାତ୍ର ଘଟିଛି ବୋଲି ସେ ମନେ କରୁଥିଲେ । ପ୍ରଧାନତଃ ଗ୍ରୀସୀୟ ଜ୍ଞାନରେ ସମୃଦ୍ଧ ଏହି ପୁସ୍ତକମାନଙ୍କର ମୂଲ୍ୟ ଓ ଉପାଦେୟତା ନିରୂପଣ କରିବାକୁ ଯାଇ ସେ କହୁଥିଲେ ଯେ ସେ ଗୁଡ଼ିକ କେବଳ ବାଳସୁଲଭ ଜ୍ଞାନ ପ୍ରଦାନରେ ହିଁ ସୀମିତ ଅର୍ଥାତ୍ ସେ ଗୁଡ଼ିକରେ କଥା ରହିଛି, କିନ୍ତୁ କାର୍ଯ୍ୟର ପ୍ରେରଣା ନାହିଁ ; ନୀତି ରହିଛି, କିନ୍ତୁ ତଦ୍ଦ୍ୱାରା ଉଦ୍ଭାବନ, ଉତ୍ପାଦନ ହେବା ପରିବର୍ତ୍ତେ ବାଦ-ବିତଣ୍ଡା ହିଁ ସାର ହୋଇଛି । ବହୁବର୍ଷ ଧରି ବିଜ୍ଞାନ ମୃତକଳ୍ପ ଅବସ୍ଥାରେ ପଡ଼ି ରହିଛି ଓ ତାହାର କୌଣସି ଉଲ୍ଲେଖନୀୟ ଅଗ୍ରଗତି ହୋଇ ପାରିନାହିଁ । ବହୁବର୍ଷ ଆଗରୁ ଉତ୍ଥାପିତ ପ୍ରଶ୍ନ ଏବେ ମଧ୍ୟ ପ୍ରଶ୍ନାକାରରେ ରହିଛି ଏବଂ ସମାଧାନର ଚେଷ୍ଟା ଆଦୌ ହେଉନାହିଁ । ଗୁରୁ ଓ ପଣ୍ଡିତଙ୍କର ଅଭାବ ନାହିଁ, କିନ୍ତୁ ସେମାନେ ଉଦ୍ଭାବକ ନୁହନ୍ତି କିମ୍ବା ଉଦ୍ଭାବନର ସମୃଦ୍ଧି-ବିଧାୟକ ନୁହନ୍ତି । ଅବଶ୍ୟ ଯାନ୍ତ୍ରିକ ଶିଳ୍ପରେ କେତେକ ଅଗ୍ରଗତି ଘଟିଥିବା କଥା ବେକନ୍ ସ୍ୱୀକାର କରୁଥିଲେ । କିନ୍ତୁ ତାଙ୍କ ମତରେ ଦର୍ଶନ ଓ ବିଜ୍ଞାନ କ୍ଷେତ୍ରରେ ପ୍ରବର୍ତ୍ତକଙ୍କ ପରବର୍ତ୍ତୀ ଦାର୍ଶନିକ ଓ ବୈଜ୍ଞାନିକମାନେ ତାହାଙ୍କ କାର୍ଯ୍ୟକୁ ଅଗ୍ରଗାମୀ କରାଇବା ପରିବର୍ତ୍ତେ କେବଳ ତାଙ୍କର ଆନୁଗତ୍ୟ ସ୍ୱୀକାର କରି ଆସିଛନ୍ତି । ଅବଶ୍ୟ ପୃଥିବୀରେ ଦର୍ଶନ ଓ ବିଜ୍ଞାନ ସର୍ବତୋଭାବେ ପରିପୂର୍ଣ୍ଣତା ଲାଭ କଲା ପରେ ପୁଣି ତହିଁରେ ଅଗ୍ରଗତି ଆଶା କରିବା ବୃଥା । କିନ୍ତୁ ବେକନ୍ ତାଙ୍କ ସମୟର ଦର୍ଶନ ଓ ବିଜ୍ଞାନର ଅବସ୍ଥା ପରିଦର୍ଶନ କରି ସେ ଗୁଡ଼ିକ ସେହି ସ୍ତରକୁ ଉନ୍ନୀତ ହୋଇ ସାରିଛି ବୋଲି ଗ୍ରହଣ କରିବା ହାସ୍ୟାସ୍ପଦ ବୋଲି ମନେ କରୁଥିଲେ ।

ତାଙ୍କର ପୂର୍ବସୂରିମାନଙ୍କ ମଧ୍ୟରେ ଯେ ଅସଂଖ୍ୟ ଚିନ୍ତାଶୀଳ, ଜ୍ଞାନୀ ଓ ବିଚକ୍ଷଣ ବ୍ୟକ୍ତି ଥିଲେ ଏହା ବେକନ୍ ଅସ୍ୱୀକାର କରୁ ନ ଥିଲେ । କିନ୍ତୁ ପ୍ରଚଳିତ ଭାବଧାରାର ବିରୁଦ୍ଧାଚରଣ କରି ଓ ସାଧାରଣ ଜନମତକୁ ଉପେକ୍ଷା

କରି ନିଜ ମତର ପ୍ରଖ୍ୟାପନ କରିବାର ସୁବିଧା ସେମାନେ ହୁଏତ ପାଇପାରି ନ ଥିଲେ । ତେଣୁ ଗୁରୁ ବସ୍ତୁ ନଦୀଗର୍ଭରେ ବିଲୀନ ହୋଇ କେବଳ ଲଘୁ ବସ୍ତୁହିଁ ନଦୀ ସ୍ରୋତରେ ଭାସି ଆସିବା ପରି ସମୟସ୍ରୋତରେ ଅନେକ ଉପାଦେୟ ତଥ୍ୟ ନିଶ୍ଚିହ୍ନ ହୋଇ ଯାଇଅଛି ।

ବେକନ୍‌ଙ୍କ ମତରେ ଯେଉଁ ବିଜ୍ଞାନ ଗୁଡ଼ିକ ତାଙ୍କ ସମୟ ପର୍ଯ୍ୟନ୍ତ ଆସି ପାରିଛି । ସେ ଗୁଡ଼ିକର ପ୍ରବର୍ତ୍ତକମାନେ ପ୍ରକୃତିର କୁଟିଳତା, ସତ୍ୟର ଗୋପନୀୟତା, ବସ୍ତୁର ଦୁର୍ବୋଧତା, କାରଣର ଦୁର୍ଜ୍ଞେୟତା ଓ ମନୁଷ୍ୟ ମନର ଦୁର୍ବଳତା କଥା ଉଲ୍ଲେଖ କରିଥିଲେ ମଧ୍ୟ ନିଜ ମତର ଅସାରତା ବା ପ୍ରୟୋଜ୍ୟ ପଦ୍ଧତିର ଅଯୋଗ୍ୟତା କଥା ସ୍ୱୀକାର କରି ନାହାନ୍ତି । ଏତଦ୍ୱାରା ସେମାନଙ୍କର ଅଜ୍ଞାନତା ଅପଯଶରୁ ମୁକ୍ତିଲାଭ କଲେ ସୁଦ୍ଧା ବିଜ୍ଞାନ ଗୁଡ଼ିକ ନିଷ୍ଫଳ, ସଂଶୟାତ୍ମକ ଓ ଅନଗ୍ରସର ଅବସ୍ଥାରେ ପଡ଼ି ରହିଛି । ଯେଉଁମାନେ ଦୃଢ଼ ସଂକଳ୍ପ ହୋଇ ବିଜ୍ଞାନର ପରିସର ବୃଦ୍ଧି କରିବା ପାଇଁ ସଚେଷ୍ଟ ସେମାନେ ମଧ୍ୟ ପ୍ରଚଳିତ ଭାବଧାରା ଓ ପଦ୍ଧତିରୁ ନିଜକୁ ସଂପୂର୍ଣ୍ଣ ମୁକ୍ତ କରି ପାରୁ ନାହାନ୍ତି ଏବଂ ଜ୍ଞାନକୁ ତାହାର ଯଥାର୍ଥ ଉତ୍ସରୁ ସଂଗ୍ରହ ନ କରି ପ୍ରଚଳିତ ବିଜ୍ଞାନରେ ସାମାନ୍ୟ କେତୋଟି ନୂତନ ବିଷୟର ସଂଯୋଗ କରି ପାରିଲେ ନିଜକୁ କୃତାର୍ଥ ମନେ କରୁଛନ୍ତି । କିନ୍ତୁ ଏହାଦ୍ୱାରା ଯଥାର୍ଥ ବିଜ୍ଞାନର ଉନ୍ନତି ହେବା ପରିବର୍ତ୍ତେ ବରଂ ତାହାର କ୍ଷତି ସାଧନ କରା ଯାଉଅଛି । କାରଣ ଏହାଦ୍ୱାରା ପ୍ରଚଳିତ ଭ୍ରାନ୍ତ ଧାରଣାର ବିନାଶ କରା ନ ଯାଇ ତାହାକୁ ଆହୁରି ଅନେକ ଦିନ ପ୍ରଚଳିତ ହେବା ନିମିତ୍ତ ପ୍ରଶ୍ରୟ ଦିଆ ଯାଉଅଛି । ତେଣୁ ଏ ପ୍ରକାର ବୈଜ୍ଞାନିକମାନଙ୍କ ଦ୍ୱାରା କେତେକ ତ୍ରୁଟି ସଂଶୋଧିତ ହୋଇଥାଏ, ମାତ୍ର ବିଜ୍ଞାନର ଅଗ୍ରଗତି ହୁଏ ନାହିଁ; ଜ୍ଞାନାହରଣର ସାଧନ ସୁନ୍ଦର ହୁଏ, କିନ୍ତୁ ଜ୍ଞାନର ପରିସର ପ୍ରସାରିତ ହୁଏ ନାହିଁ ।

ଅନ୍ୟ କେତେକେ ସାର୍ବଭୌମିକତାର ସହିତ ପାରମ୍ପରିକ ଦର୍ଶନ ଓ ବିଜ୍ଞାନକୁ ପ୍ରତ୍ୟାଖ୍ୟାନ ତଥା ତାହାର ମୂଳୋତ୍ପାଟନ କରି ସ୍ୱୀୟ ପ୍ରତିଭାର

ଉପଯୋଗ ବଳରେ ସ୍ୱକୀୟ ମତବାଦ ପ୍ରଖ୍ୟାପନର ପଥ ପରିଷ୍କାର କରି ଯାଇଛନ୍ତି । କିନ୍ତୁ ଏମାନଙ୍କ ଦ୍ୱାରା ମଧ୍ୟ କଳା ଓ ଦର୍ଶନର ଅଭିବୃଦ୍ଧି ଘଟି ପାରିନାହିଁ । କାରଣ କଳା ଓ ଦର୍ଶନର ବିଷୟବସ୍ତୁ ଓ ମୂଳର ଅଭିବୃଦ୍ଧି ଏମାନଙ୍କର ଆଭିମୁଖ୍ୟ ନୁହେଁ । ତେଣୁ ଏମାନେ କେତେକ ମୀତିଗତ ପରିବର୍ତ୍ତନ ଓ ସ୍ୱପ୍ରଖ୍ୟାପିତ ମତବାଦ ଆଡ଼କୁ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ବ୍ୟତୀତ ଅନ୍ୟ କୌଣସି ପ୍ରକାର ପ୍ରଗତି ବିଧାନ କରିବାକୁ ସମର୍ଥ ହୋଇ ନାହାନ୍ତି । ଏତଦ୍ଦ୍ୱାରା ଏକପ୍ରକାର ଭ୍ରାନ୍ତ ଧାରଣା ପରିବର୍ତ୍ତେ ଅନ୍ୟ ପ୍ରକାର ଭ୍ରାନ୍ତ ଧାରଣାର ପ୍ରବର୍ତ୍ତନ ହୋଇଛି, କିନ୍ତୁ ଭ୍ରାନ୍ତ ନିରାକୃତ ହୋଇ ପାରି ନାହିଁ ।

ଯେଉଁମାନେ ନିଜର ହେଉ ବା ଅନ୍ୟର ହେଉ, କୌଣସି ପ୍ରକାର ମତବାଦ ଦ୍ୱାରା ଶୃଙ୍ଖଳିତ ନ ହୋଇ ସଂପୂର୍ଣ୍ଣ ସ୍ୱାଧୀନ ଭାବରେ ନିଜକୁ ଓ ନିଜର ସହଯୋଗୀମାନଙ୍କୁ ବୈଜ୍ଞାନିକ ଅନୁସନ୍ଧାନରେ ଉତ୍ସାହିତ କରି ପାରିଛନ୍ତି, ସେମାନଙ୍କର ଉଦ୍ଦେଶ୍ୟ ସାଧୁ ହେଲେହେଁ ଉଦ୍‌ଯୋଗ ବଳିଷ୍ଠ ହୋଇ ପାରିନାହିଁ । ସତ୍ୟାନୁସନ୍ଧାନ ନିମିତ୍ତ ଅନୁଭୂତି ଓ ବାସ୍ତବ ପ୍ରକୃତିର ଅନୁଶୀଳନରେ ଯେତେ ପରିମାଣର ନିଷ୍ଠା ଓ ଆନ୍ତରିକତା ଆବଶ୍ୟକ, ଏମାନଙ୍କଠାରେ ତାହାର ଅଭାବ ଥିବା ହେତୁ ଏମାନଙ୍କର ସମସ୍ତ ଚେଷ୍ଟା ସାମାନ୍ୟ କେତୋଟି ସାଧାରଣ ଧରଣର ସଫଳ ଆବିଷ୍କାରରେହିଁ ସୀମିତ ରହିଯାଇଛି । ତେଣୁ ଏମାନଙ୍କର ପରୀକ୍ଷଣ ଫଳପ୍ରଦ, କିନ୍ତୁ ଜ୍ଞାନପ୍ରଦ ନୁହେଁ । ସୃଷ୍ଟିର ପ୍ରଥମ ଦିବସରେ ଯେପରି ଆଲୋକ ଓ ତତ୍‌ପରବର୍ତ୍ତୀ ଦିନମାନଙ୍କରେ ଅନ୍ୟାନ୍ୟ ବସ୍ତୁର ସୃଷ୍ଟି ହୋଇଥିଲା, ସେହିପରି ପ୍ରଥମେ ଜ୍ଞାନାଲୋକ ଲାଭକରି ତାହାର ସାହାଯ୍ୟରେହିଁ ଆବିଷ୍କାରରେ ପ୍ରବୃତ୍ତ ହେବା ବିଧେୟ ବୋଲି ବେକନ୍ ମନେ କରୁଥିଲେ । କିନ୍ତୁ ତାଙ୍କ ମତରେ ଜ୍ଞାନକୁ ପ୍ରାଧାନ୍ୟ ଦିଆଯାଇ ସମସ୍ତ ପ୍ରକାର ବିଜ୍ଞାନର ଦିହାସ୍ୱକ ସାଧନ ନିର୍ଧାରି ଭାବରେ ତର୍କଶାସ୍ତ୍ରକୁହିଁ ସଂଗ୍ରହ କରାଯାଇ ପାରିବ ବୋଲି ମନେ କରିବା ଭ୍ରାନ୍ତି । ମନୁଷ୍ୟର ଧୀଶକ୍ତିକୁ ତାହାର ସ୍ୱଭାବସିଦ୍ଧ ଗତିରେ ଗତି କରିବାକୁ ନ ଦେଇ ତାହାକୁ ନିୟନ୍ତ୍ରିତ ଭାବେ ପରିଚାଳିତ କରିବାର ଆବଶ୍ୟକତା

ରହିଛି ସତ, କିନ୍ତୁ ଏତଦ୍ଦ୍ୱାରା ବିଜ୍ଞାନର ବିଷୟ ବସ୍ତୁ ସମ୍ବନ୍ଧରେ ଜ୍ଞାନଲାଭ ହୋଇ ନ ପାରେ । ବେକନ୍‌ଙ୍କ ମତରେ ତାଙ୍କ ସମୟର ପ୍ରଚଳିତ ତର୍କ-ପଦ୍ଧତି ସାଧାରଣ ବ୍ୟବସାୟ ଓ ଦ୍ୱନ୍ଦମୂଳକ କଳା କ୍ଷେତ୍ରରେହିଁ ପ୍ରଯୋଜ୍ୟ ହେବାର ଉପଯୋଗୀ; କିନ୍ତୁ ଏହା ପ୍ରକୃତିଠାରୁ ସତ୍ୟ ସଂଗ୍ରହ କରିବା ନିମିତ୍ତ ସଂପୂର୍ଣ୍ଣ ଅନୁପଯୁକ୍ତ । ତେଣୁ ଏ ପ୍ରକାର ତର୍କପଦ୍ଧତି ଦ୍ୱାରା ପ୍ରକୃତି-ସମ୍ବନ୍ଧୀୟ ସତ୍ୟର ସନ୍ଧାନ ପାଇବା ସମ୍ଭବପର ନୁହେଁ ।

ମନୁଷ୍ୟର ଆସ୍ଥା ଓ ପରିଶ୍ରମର ଫଳ ତାହାର ସନ୍ତୋଷ ବିଧାନ କରିପାରି ନାହିଁ । ବିଶ୍ୱ ପ୍ରକୃତି ଏକ ଅସମାହିତ ପ୍ରହେଳିକା ରୂପେ ପରିବ୍ୟାପ୍ତ । ତାହାର ରହସ୍ୟ ଭେଦ କରିବାର ପ୍ରୟାସ ଆନ୍ତରିକତା ସହ କରାଯାଇ ପାରି ନାହିଁ କିମ୍ବା ସେଥି ନିମିତ୍ତ କୌଣସି ସୁପରିକଳ୍ପିତ ଯୋଜନା ପ୍ରଣୀତ ହୋଇନାହିଁ । ତେଣୁ ଏପରି ଏକ ଅସ୍ୱସ୍ତିକର ପରିସ୍ଥିତିର ପରିବର୍ତ୍ତନ ଆଣିବାକୁ ହେଲେ ରହସ୍ୟମୟୀ ପ୍ରକୃତିର ଦୁର୍ଭେଦ୍ୟ ଦୁର୍ଗ ମଧ୍ୟକୁ ପ୍ରବେଶାଧିକାର ଲାଭ କରିବାକୁ ଏକ ଅଭ୍ରାନ୍ତ ସୂତ୍ରର ଆବିଷ୍କାର କରିବାକୁ ପଡ଼ିବ ଏବଂ ଏକ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କରି ଜ୍ଞାନର ସର୍ବ ପ୍ରଥମ ସ୍ତର ଅର୍ଥାତ୍ ଇନ୍ଦ୍ରିୟାନୁଭୂତି ଠାରୁ ଆରମ୍ଭକରି ପ୍ରକୃତିର ଗୁହ୍ୟତମ ତଥ୍ୟ ସମ୍ବନ୍ଧରେ ସମ୍ୟକ ଜ୍ଞାନ ଲାଭ କରିବା ପର୍ଯ୍ୟନ୍ତ, ପ୍ରଗାଢ଼ ଅଧ୍ୟବସାୟ ସହକାରେ ସୁନିୟନ୍ତ୍ରିତ ଭାବରେ କାର୍ଯ୍ୟ କରିବାକୁ ପଡ଼ିବ ।

କେବଳ ବୁଦ୍ଧିର ପ୍ରଖରତା ବା କେତେକ ଆକସ୍ମିକଭାବେ ସାର୍ଥକ ସଫଳ ପରୀକ୍ଷଣର ପୁନରାବୃତ୍ତି ଦ୍ୱାରା ଉପସ୍ଥିତ ପରିସ୍ଥିତିର ପରିବର୍ତ୍ତନ ସମ୍ଭବପର ନୁହେଁ । ପ୍ରାଚୀନ ପଣ୍ଡିତମାନେ ବୌଦ୍ଧିକତାର ବିକାଶ ଘଟାଇ ଅମୂର୍ତ୍ତ ବିଷୟକ ଧ୍ୟାନ ଧାରଣାରେ ଯେ ଧୁରନ୍ଧର ଥିଲେ, ଏଥିରେ ସନ୍ଦେହ ନାହିଁ । ଏତଦ୍ ବ୍ୟତୀତ ସାମୟିକ କେତେକ ଉଲ୍ଲେଖ ଯୋଗ୍ୟ ଆବିଷ୍କାର ଯେ ନହୋଇଛି ତାହା ମଧ୍ୟ ନୁହେଁ । ଉଦାହରଣ ସ୍ୱରୂପ ପୁରାତନ ପନ୍ଥାର ଅନୁସରଣ କରି ନାବିକମାନେ ତାରକା ପର୍ଯ୍ୟବେକ୍ଷଣ ସାହାଯ୍ୟରେ କେବଳ ବେଳାଭୂମିର ଅଦୂର ସମୁଦ୍ରଭାଗରେ ପୋତ

ସ୍ତୁଳନା କରିଥିଲେ ଏବଂ ଭୂମଧ୍ୟସ୍ଥ କ୍ଷୁଦ୍ର ସମୁଦ୍ର ଅତିକ୍ରମ କରିବାରେ ସମର୍ଥ ହେଉଥିଲେ । କିନ୍ତୁ ଅଧିକ ନିର୍ଭର ଯୋଗ୍ୟ ଚୁମ୍ବକ କଣ୍ଟାଯୁକ୍ତ ସାମୁଦ୍ରିକ ଦିକ୍ ପ୍ରଦର୍ଶନ ଯନ୍ତ୍ରର ଉଦ୍ଭାବନ ଫଳରେ ସମସ୍ତ ମହାସାଗର ଅତିକ୍ରମ କରି ନୂତନ ମହାଦେଶ ଆବିଷ୍କାର କରିବା ସମ୍ଭବପର ହେଲା । ସେହିପରି କଳା ଓ ବିଜ୍ଞାନରେ ଯେତେ ଗୁଡ଼ିଏ ଆବିଷ୍କାର ବା ଉଦ୍ଭାବନ ହୋଇ-ଯାଇଛି, ତାହା ଇନ୍ଦ୍ରିୟାନୁଭୂତିର ନିକଟବର୍ତ୍ତୀ ବିଷୟ ସମ୍ବଳିତ ଓ ସାଧାରଣ ଧାରଣାର ସତ୍ୱକଥିତ୍ ଉନ୍ନତିକାରକ ହୋଇଥିବାରୁ ଅଭ୍ୟାସ, ମନନ, ପର୍ଯ୍ୟବେକ୍ଷଣ ଓ ଯୁକ୍ତିଦ୍ୱାରା ଲାଭ କରାଯାଇ ପାରିଅଛି । କିନ୍ତୁ ପ୍ରକୃତିର ଅଭ୍ୟନ୍ତରସ୍ଥ ଅତି ନିଗୂଢ଼ ତଥ୍ୟ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରିବା ନିମିତ୍ତ ଗୋଟିଏ ଉନ୍ନତତର ଓ ଅଧିକତର ଉପଯୋଗୀ ପ୍ରଣାଳୀ ବାହାର କରି ମନୁଷ୍ୟର ମନ ଓ ବୁଦ୍ଧିକୁ ଯଥାଯଥ ଭାବେ ନିୟୋଜିତ ଓ ନିୟନ୍ତ୍ରିତ କରିବାର ଆବଶ୍ୟକତା ରହିଛି ବୋଲି ବେକନ୍ ମନେ କରୁଥିଲେ ।

ତାଙ୍କ ସମୟର ଓ ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ପ୍ରକୃତିର ରହସ୍ୟ ଭେଦକରି ତାହା ଉପରେ କର୍ତ୍ତୃତ୍ୱ ଲାଭ କରିବା ପାଇଁ ମନ ଓ ବୁଦ୍ଧିର ନିୟମାମକ ଏକ ନିଃସନ୍ଦେହ ଓ ସୁଦୃଢ଼ ପନ୍ଥାର ଭିତ୍ତି ସ୍ଥାପନ କରିବା ଉଦ୍ଦେଶ୍ୟରେ ବେକନ୍ ନିଜକୁ ଉତ୍ସର୍ଗ କରିଥିଲେ । ବେକନ୍ଙ୍କ ମତରେ ତାଙ୍କର ପୂର୍ବସୂରି ମାନେ ଗୋଟିଏ ଦୁଇଟି ଘଟଣା, ଦୃଷ୍ଟାନ୍ତ ବା ଅନୁଭୂତି ଉପରେ ନିର୍ଭର କରି କଳା ସୃଷ୍ଟିର ସମସ୍ତ ସାଧନ ବୁଦ୍ଧିର ପ୍ରୟୋଗଦ୍ୱାରା ଉଦ୍ଭାବନ କରୁଥିଲେ । କିନ୍ତୁ ନିଜର ଉଦ୍ଭାବନ ଓ ଶିକ୍ଷା-ପ୍ରଣାଳୀର ବର୍ଣ୍ଣନା ଦେବାକୁ ଯାଇ ସେ କହିଥିଲେ ଯେ ପ୍ରାକୃତିକ ଘଟଣା ଗୁଡ଼ିକର ପର୍ଯ୍ୟବେକ୍ଷଣ କାଳରେ ସେ ସ୍ୱୀୟ ବୁଦ୍ଧିକୁ ସଂଯତ କରି ରଖିବା ଦ୍ୱାରା ଘଟଣା ଗୁଡ଼ିକ ଆପେ ଆପେ ଏକ ନିର୍ଦ୍ଦିଷ୍ଟ ବାସ୍ତବିକ ସତ୍ୟର ସ୍ପଷ୍ଟ ଇଙ୍ଗିତ ଦିଅନ୍ତି ଏବଂ କେବଳ ଏହାକୁହିଁ ଲକ୍ଷ୍ୟ କରିବାରେ ସେ ବୁଦ୍ଧିର କାର୍ଯ୍ୟ ସୀମିତ ରଖନ୍ତି । ଅପରକୁ ତାଙ୍କର ଉଦ୍ଭାବନ-ପ୍ରଣାଳୀ ଶିକ୍ଷା ଦେବା କ୍ଷେତ୍ରରେ ମଧ୍ୟ ସେ ବୁଦ୍ଧିର ଏହି ନମ୍ରତା ରକ୍ଷା କରୁଥିଲେ । ନିଜର

ଉଦ୍ଭାବନ ଗୁଡ଼ିକର ମୂଳବର୍ଦ୍ଧନ ନିମିତ୍ତ ବିପକ୍ଷ ମତର ଖଣ୍ଡନ ବା ପ୍ରାଚୀନତାର ସମର୍ଥନ ପ୍ରଦର୍ଶନ ବା ବିଜ୍ଞବ୍ୟକ୍ତିଙ୍କ ମତର ଉଦ୍ଧାର ବା କ୍ଲିଷ୍ଟତାର ଆବରଣ ତଳେ ଦୁର୍ବଳ ଅଂଶ ଗୁଡ଼ିକର ସଂଗୋପନ ଇତ୍ୟାଦି କୌଣସି ଉପାୟ ଅବଲମ୍ବନ କରିବାକୁ ସେ ପସନ୍ଦ କରୁ ନ ଥିଲେ । ଅନ୍ୟମାନଙ୍କର ମନ ଓ ମତକୁ କୌଣସିଭାବେ ପ୍ରଭାବିତ କରିବା ତାଙ୍କର ଶିକ୍ଷା ପ୍ରଣାଳୀର ବହିର୍ଭୂତ ଥିଲା । ପ୍ରତ୍ୟେକେ ନିଜେ ପ୍ରତ୍ୟକ୍ଷରେ ବାସ୍ତବ ବସ୍ତୁର ପର୍ଯ୍ୟବେକ୍ଷଣ କରି ଗ୍ରାହ୍ୟାଗ୍ରାହ୍ୟ ନିର୍ଦ୍ଧାରଣ କରନ୍ତୁ, ଏହାହିଁ ତାଙ୍କର କାମନା ଥିଲା ଓ କେବଳ ଏଥିନିମିତ୍ତହିଁ ସେ ଶିକ୍ଷିତ ଜନତାକୁ ଆହ୍ୱାନ ଜଣାଉଥିଲେ । ସେ ନିଜେ ନିଜର ପର୍ଯ୍ୟବେକ୍ଷଣ ଲବ୍ଧ ବିଷୟାବଳୀକୁ ସଂପୂର୍ଣ୍ଣଭାବେ ଅପରିବର୍ତ୍ତିତ ରଖି ଉପସ୍ଥାପିତ କରୁଥିଲେ । ତାଙ୍କର ଦୋଷ ଦୁର୍ବଳତା, ଭ୍ରାନ୍ତି ଓ ଅସଂପୂର୍ଣ୍ଣତା ନଗ୍ନ ଓ ଅନାବୃତ ଭାବେ ପ୍ରଦର୍ଶିତ ହେଉ ଏହାହିଁ ତାଙ୍କର ଇଚ୍ଛା ବୋଲି ସେ ବ୍ୟକ୍ତ କରିଥିଲେ । କାରଣ ଏହା ଦ୍ୱାରା ଅନ୍ୟମାନେ ଅନାୟାସରେ ସେଗୁଡ଼ିକର ସଂଶୋଧନ କରି ତାଙ୍କଦ୍ୱାରା ଆରବ୍ଧ ହୋଇଥିବା କାର୍ଯ୍ୟକୁ ଅଗ୍ରସର କରାଇ ନେବେ ବୋଲି ସେ ଆଶା ପୋଷଣ କରୁଥିଲେ । ବେକନ୍‌ଙ୍କ ମତରେ ବୌଦ୍ଧିକଶକ୍ତି ଓ ଇନ୍ଦ୍ରିୟାନୁଭୂତିର ବିଚ୍ଛେଦ ହେତୁ ମାନବ ସମାଜର ପ୍ରଭୂତ କ୍ଷତିସାଧିତ ହେଉଅଛି । ତେଣୁ ମାନବସମାଜର ସମୃଦ୍ଧି କଳ୍ପେ ଉଭୟର ବିଧିବଦ୍ଧ ମିଳନ ଓ ସହଯୋଗ ସଂଘଟାଇବା ତାହାଙ୍କ ମହତ୍ତ୍ୱ ନବୀକରଣର ଲକ୍ଷ୍ୟ ହୋଇଥିଲା ।

ବେକନ୍‌ଙ୍କ ମତରେ ମାନସିକ ତୃପ୍ତି, ବିବାଦରେ ଜୟ, ଅନ୍ୟ ଉପରେ କର୍ତ୍ତୃତ୍ୱ ଅଥବା ନିଜର ସ୍ୱାର୍ଥସିଦ୍ଧି, ଯଶୋଲାଭ, ଶକ୍ତି-ଆହରଣ ଇତ୍ୟାଦି ନିମ୍ନସ୍ତରୀୟ କୌଣସି ଉଦ୍ଦେଶ୍ୟ ଜ୍ଞାନର ଯଥାର୍ଥ ଉଦ୍ଦେଶ୍ୟ ହୋଇ ନ ପାରେ । ଜ୍ଞାନର ଯଥାର୍ଥ ଉଦ୍ଦେଶ୍ୟ ସମଗ୍ର ମାନବ ସମାଜର ସାମୂହିକ ସମୃଦ୍ଧି ବିଧାନ । ଅନ୍ୟକୁ ବିତରଣ କରିବା ଦ୍ୱାରାହିଁ ଜ୍ଞାନ ଅଧିକତର ମାର୍ଜିତ, ଅଧିକତର ଉନ୍ନତ ହୋଇଥାଏ । ତେଣୁ ତାଙ୍କର ନବୀକରଣ ବା ବିଜ୍ଞାନର ସଂସ୍କାର ଆନ୍ଦୋଳନ କାର୍ଯ୍ୟରେ ସେ ସମସ୍ତଙ୍କର ସହଯୋଗ

କାମନା କରିଥିଲେ । ମୂଳରୁହିଁ ବେକନ୍ ସ୍ପଷ୍ଟ କରି ଦେଇଥିଲେ ଯେ ସେ କୌଣସି ଗୋଟିଏ ସମ୍ପ୍ରଦାୟପ୍ରସୂତ ମତର ସମର୍ଥନ ନିମିତ୍ତ ଅଥବା ଗୋଟିଏ ନୂତନ ସମ୍ପ୍ରଦାୟପ୍ରସୂତ ମତର ଭିତ୍ତି ସ୍ଥାପନ ନିମିତ୍ତ କାର୍ଯ୍ୟ କରୁ ନାହାନ୍ତି । ତାଙ୍କର ଲକ୍ଷ୍ୟ ସମଗ୍ର ମାନବ-ସମାଜର ଉନ୍ନତି-ବିଧାନ, ସମଗ୍ର ମାନବ-ସମାଜ ନିମିତ୍ତ ଶକ୍ତି-ଆହରଣ । ଏହି କାର୍ଯ୍ୟକୁ ଅସୀମ ଓ ମାନବର କ୍ଷମତା-ବହିର୍ଭୂତ ବୋଲି ବିଚାରିବା ଠିକ୍ ନୁହେଁ । କିନ୍ତୁ ଏହା ଜଣକର ବା ଗୋଟିଏ ଯୁଗର କାର୍ଯ୍ୟ ବୋଲି ବିଚାରିବା ମଧ୍ୟ ଠିକ୍ ନୁହେଁ । ମନୁଷ୍ୟ ଏ ପର୍ଯ୍ୟନ୍ତ ନିଜର କ୍ଷୁଦ୍ର ପରିସର ମଧ୍ୟରେ ଆବଦ୍ଧ ରହି ସୀମିତ ଦୃଷ୍ଟି କୋଣରୁହିଁ ବିଶ୍ୱ ପ୍ରକୃତିକୁ ସନ୍ଦର୍ଶନ କରି ଆସିଛି । ତେଣୁ ପରସ୍ପର ବିରୋଧୀ ଅନେକ ଭ୍ରାନ୍ତ ମତବାଦର ସୃଷ୍ଟି ହୋଇଛି । ବିଶ୍ୱ-ପ୍ରକୃତିର ସ୍ୱରୂପ ସାର୍ବଜନୀନ ଦୃଷ୍ଟିରୁ ଉଦ୍ଘାଟିତ ହେଲେ ଅଭ୍ରାନ୍ତ ହେବା ଯେପରି ସ୍ୱାଭାବିକ, କୌଣସି ସୀମିତଦୃଷ୍ଟିଭିତ୍ତିକ ମତବାଦ ଦ୍ୱାରା ଖଣ୍ଡିତ ନ ହେବା ମଧ୍ୟ ସେହିପରି ସ୍ୱାଭାବିକ । ଶାଶ୍ୱତ ସତ୍ୟରେ ବିଭିନ୍ନ ମତବାଦର ସ୍ଥାନ ନାହିଁ ।

ବେକନ୍ଙ୍କର କାର୍ଯ୍ୟ ଯୋଜନା ଛଅଗୋଟି ଅଂଶରେ ବିଭକ୍ତ । ସେ ଗୁଡ଼ିକ ହେଉଛି :—

(୧) ବିଜ୍ଞାନର ବିଭାଗୀ କରଣ (୩୧)
(୨) ନୂତନ ସାଧନ ବା ପ୍ରକୃତିର ବ୍ୟାଖ୍ୟା-ସମ୍ବନ୍ଧୀୟ ନିର୍ଦ୍ଦେଶ (୩୨)

---

(୩୧) The Division of the Sciences.

(୩୨) The New Organon; or Directions concerning the Interpretation of Nature.

(୩) ବିଶ୍ୱର ଘଟଣାବଳୀ ବା ଦର୍ଶନର ଭିତ୍ତିସ୍ଥାପନ ନିମିତ୍ତ ଏକ ପ୍ରାକୃତିକ ଏବଂ ପରୀକ୍ଷଣମୂଳକ ଇତିହାସ ସଙ୍କଳନ (୩୩)
(୪) ବୁଦ୍ଧିର କ୍ରମାରୋହଣ (୩୪)
(୫) ଅଗ୍ରଗାମୀ ସମୂହ ବା ନୂତନ ଦର୍ଶନର ପୂର୍ବାଭାସ (୩୫)
(୬) ନୂତନ ଦର୍ଶନ ବା କର୍ମାଭିମୁଖୀ ବିଜ୍ଞାନ (୩୬)

ବେକନ୍ ତାଙ୍କ କାର୍ଯ୍ୟକ୍ରମର ସୂଚନା ଦେବାକୁ ଯାଇ ଉପର୍ଯ୍ୟୁକ୍ତ ପ୍ରତ୍ୟେକ ଅଂଶର ଆବଶ୍ୟକତା ଓ ଯାଥାର୍ଥ୍ୟ ସମ୍ବନ୍ଧରେ ନିଜର ଯୁକ୍ତି ଉପସ୍ଥାପିତ କରିଥିଲେ ।

ପ୍ରଥମତଃ ଜ୍ଞାନରାଜ୍ୟର କେଉଁ ପ୍ରଦେଶ ବିଜିତ ଓ କେଉଁ ପ୍ରଦେଶ ବିଜେୟ ସେ ସମ୍ବନ୍ଧରେ ଆମ୍ଭମାନଙ୍କର ସ୍ପଷ୍ଟ ଧାରଣା ରହିବା ଆବଶ୍ୟକ । ତାଙ୍କ କାର୍ଯ୍ୟକ୍ରମରେ ବିଜ୍ଞାନର ବିଭାଗୀକରଣକୁ ପ୍ରଥମ ସ୍ଥାନ ଦିଆଯାଇଥିଲା । ତାପରେ ଉପାଦେୟ ଜ୍ଞାନର ବିକାଶ ନିମନ୍ତେ ବୁଦ୍ଧିର ଯଥାଯଥ ସୁଯୋଗ ପାଇଁ ଏକ ଯଥାର୍ଥ ତର୍କ ପଦ୍ଧତି ଅନୁସୃତ ହେବା ଆବଶ୍ୟକ । ଉପଯୁକ୍ତ ସାଧନ ବିନା ଉପାଦେୟ ଜ୍ଞାନ ଲାଭ କରିବାକୁ ଆଶା କରିବା ବୃଥା । ତେଣୁ ନୂତନ ସାଧନ ଅର୍ଥାତ୍ ଏକ ନୂତନ ତର୍କ-ପଦ୍ଧତିର ରୂପରେଖ ଦେବା ତାଙ୍କ କାର୍ଯ୍ୟକ୍ରମରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ବେକନ୍ ତାଙ୍କ ତର୍କ-ପଦ୍ଧତିକୁ ପ୍ରକୃତିର ବ୍ୟାଖ୍ୟା-ସମ୍ବନ୍ଧୀୟ ନିର୍ଦ୍ଦେଶ ବୋଲି ବର୍ଣ୍ଣନା କରିଛନ୍ତି ।

---

(୩୩) The Phenomena of the Universe; or, a Natural and Experimental History for the Foundation of philosophy

(୩୪) The Ladder of the Intellect

(୩୫) The Forerunners; or, Anticipations of the New philosophy

(୩୬) The New philosophy; or, Active Science

ବେକନ୍‌ଙ୍କ ମନ୍ତ୍ରରେ ଦାର୍ଶ[illegible] ଜ୍ଞାନ ଆହରଣ ନିମିତ୍ତ ଆରିଷ୍ଟୋଟଲଙ୍କ ତର୍କପଦ୍ଧତିର ପ୍ରତି[illegible]ଥିଲା । ଆରିଷ୍ଟୋଟଲ୍‌ଙ୍କ ମତରେ ପ୍ରତ୍ୟକ୍ଷ କେବଳ ପ୍ରଥମ ପର୍ଯ୍ୟାୟର ଜ୍ଞାନ ଦେଇଥାଏ, କାରଣ ଏହା ଏକକ ବସ୍ତୁ ବିଷୟକ ଜ୍ଞାନ । ଭୂୟଃ ପ୍ରତ୍ୟକ୍ଷରୁ ଅନୁଭୂତ ବା ଅଭିଜ୍ଞତା ଜାତ ହୁଏ । କିନ୍ତୁ ପ୍ରତ୍ୟକ୍ଷ ଓ ଅନୁଭୂତ ଉଭୟ କ୍ଷେତ୍ରରେ ଜ୍ଞାନ ବସ୍ତୁନିଷ୍ଠ । ବିଶ୍ୱରନିଷ୍ଠ ନୁହେଁ । ଆରିଷ୍ଟୋଟଲ୍‌ଙ୍କ ମତରେ ବିଶ୍ୱରନିଷ୍ଠ ଜ୍ଞାନହିଁ ସର୍ବୋତ୍କୃଷ୍ଟ, କାରଣ ଏହା ସାର୍ବିକ ଓ ଅବିସମ୍ବାଦିତ । ଏହି ଶେଷୋକ୍ତ ପ୍ରକାର ଜ୍ଞାନହିଁ ଦର୍ଶନର ଭିତ୍ତିଭୂମି । ସନ୍ଦେହାତ୍ମକ ଜ୍ଞାନ ଉପରେ ନିର୍ଭର କରି ଦର୍ଶନ ପ୍ରତିଷ୍ଠା କରାଯାଇ ନ ପାରେ । ଅପରିଗ୍ରହ ଜ୍ଞାନ ବିଧିବଦ୍ଧଭାବେ ପ୍ରମାଣିତ ହେବା ଆବଶ୍ୟକ । ତେ[illegible] ଆରିଷ୍ଟୋଟଲ୍ ପ୍ରମାଣ ପଦ୍ଧତି ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରିଥିଲେ । ତାଙ୍କ ଦର୍ଶନର ସାଧନ ସ୍ୱରୂପ ବ୍ୟବହୃତ 'ଅର୍ଗେନାନ' (୩୭) ବା ତର୍କ ପଦ୍ଧତିରେ ପ୍ରାମାଣିକତା ନିର୍ଦ୍ଧାରଣର ପ୍ରଣାଳୀ ପୁଙ୍ଖାନୁପୁଙ୍ଖଭାବେ ଆଲୋଚିତ । କୌଣସି ତର୍କବାକ୍ୟକୁ ସତ୍ୟ ବୋଲି ସ୍ୱୀକାର କଲେ, ଅନ୍ୟ କେଉଁ କେଉଁ ତର୍କବାକ୍ୟକୁ ସତ୍ୟ ବା ମିଥ୍ୟା ବୋଲି ସ୍ୱୀକାର କରିବା ଅନିବାର୍ଯ୍ୟ ତାହାର ବିଶଦ୍‌ବ୍ୟାଖ୍ୟା ତାଙ୍କର ତର୍କଶାସ୍ତ୍ରରେ ରହିଛି । କିପରି ଭାବରେ ଅଧିଗତ ଜ୍ଞାନରୁ ଅନଧିଗତ ଜ୍ଞାନ ଲାଭ କରାଯାଇପାରେ, କିପରି ଭାବରେ ପ୍ରତ୍ୟକ୍ଷଲବ୍ଧ ସାକ୍ଷାତ୍ ଜ୍ଞାନରେ ସୀମିତ ନ ରହି ଅନୁମାନଲବ୍ଧ ପରୋକ୍ଷଜ୍ଞାନ ଦ୍ୱାରା ସାମୂହିକଭାବେ ଜ୍ଞାନର ସମ୍ପ୍ରସାରଣ କରାଯାଇପାରେ ଏହାର ସୁନିର୍ଦ୍ଦିଷ୍ଟ ପନ୍ଥା ନିର୍ଦ୍ଧାରଣ କରିବା ଆରିଷ୍ଟୋଟଲଙ୍କ ତର୍କଶାସ୍ତ୍ରର ମୁଖ୍ୟ ଲକ୍ଷ୍ୟ । ତେଣୁ ସ୍ପଷ୍ଟତଃ ଏହା ଏକ ଅବରୋହ ପଦ୍ଧତି ।

ଅବରୋହ ତର୍କରେ ଯୁକ୍ତି ନିର୍ଦ୍ଦୋଷ ହୋଇଥିଲେ ହେତୁବାକ୍ୟରୁ ସିଦ୍ଧାନ୍ତ ଗ୍ରହଣ ସମୀଚୀନ ହୋଇପାରେ । କିନ୍ତୁ ସିଦ୍ଧାନ୍ତକୁ ସତ୍ୟବୋଲି ଦାବୀ କରିବା ନିମିତ୍ତ ହେତୁବାକ୍ୟକୁ ସତ୍ୟବୋଲି ପ୍ରଦର୍ଶନ କରିବାର ଆବଶ୍ୟକତା ରହିଛି । ବେକନ୍ ଏହି ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରି

(୩୭) **Organon** ବା **Organum,**

କହିଥିଲେ ଯେ କେବଳ ଅନୁମାନ ପ୍ରକ୍ରିୟାକୁ ଅଭ୍ରାନ୍ତ କରିବା ଦାର୍ଶନିକ ଜ୍ଞାନ ଆହରଣ ନିମିତ୍ତ ଯଥେଷ୍ଟ ନୁହେଁ । ଦର୍ଶନରେ ଗୃହୀତ ସିଦ୍ଧାନ୍ତ ସତ୍ୟ ଏବଂ ଅବିସମ୍ବାଦିତ ହେବା ନିମିତ୍ତ ଅବରୋହ ସୂତ୍ରର ହେତୁବାକ୍ୟ ରୂପେ ଗୃହୀତ ତର୍କବାକ୍ୟଗୁଡ଼ିକ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ଅବଶ୍ୟ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଏକକ ବସ୍ତୁବିଷୟକ ଜ୍ଞାନ ଦେଇଥାଏ; କିନ୍ତୁ ଏହି ଜ୍ଞାନରୁ ସୁସ୍ପଷ୍ଟ, ସାର୍ବିକ ଓ ଅସନ୍ଦିଗ୍ଧ ଜ୍ଞାନ ଲାଭ କରିବାକୁ ପଡ଼ିବ । ଏଥି ନିମିତ୍ତ ଏକ ନୂତନ ତର୍କପଦ୍ଧତି ପ୍ରୟୋଗ କରିବାର ଆବଶ୍ୟକତା ରହିଛି । କିପରି ଭାବରେ ଏକକ ବା କେତେକ ବିଷୟର ଜ୍ଞାନରୁ ସାର୍ବିକ ବା ସାମାନ୍ୟ ତର୍କବାକ୍ୟର ଯଥାର୍ଥ ଜ୍ଞାନ ଆହରଣ କରାଯାଇପାରେ ତାହାର ଏକ ବିଧିବଦ୍ଧ ପ୍ରଣାଳୀ ନିର୍ଦ୍ଧାରିତ ହେବା ଉଚିତ । ଏହି ପ୍ରଣାଳୀ ଅବରୋହମୂଳକ ନ ହୋଇ ଆରୋହମୂଳକ ହେବା ଅନିବାର୍ଯ୍ୟ । ବେକନ୍ ତାଙ୍କ ପ୍ରଣୀତ 'ନୋଭମ୍ ଅର୍ଗେନମ' ବା ନୂତନ ସାଧନ ଗ୍ରନ୍ଥରେ ଏହି ଆରୋହ ତର୍କ ପଦ୍ଧତିର ସବିଶେଷ ଆଲୋଚନା କରିଥିଲେ ।

ବେକନଙ୍କ ସମୟରେ ଆରୋହ ପଦ୍ଧତିର ଯେ ବ୍ୟବହାର ନ ଥିଲା ଏ କଥା ନୁହେଁ । କୌଣସି ଏକ ଘଟଣା ବିଷୟକ କେତେକ ଦୃଷ୍ଟାନ୍ତର ଅନୁଭୂତିରୁ ସେହି ଘଟଣା ସମ ପରିସ୍ଥିତିରେ ଅନ୍ୟାନ୍ୟ ଘଟିବ ବୋଲି ମନେ କରିବା ମନୁଷ୍ୟର ଏକ ସାଧାରଣ ଓ ସ୍ୱଭାବସିଦ୍ଧ ପ୍ରବୃତ୍ତି ଏବଂ ଏହାହିଁ ଆରୋହାନୁମାନ । 'କେତେକ କାକ କୃଷ୍ଣ'—ଏହା ଅନୁଭୂତ ସିଦ୍ଧ । ଏଥିରୁ ଆମ୍ଭେମାନେ ଆରୋହାନୁମାନ ଦ୍ୱାରା 'ସମସ୍ତ କାକ କୃଷ୍ଣ'— ଏହି ଧାରଣାରେ ଉପନୀତ ହେଉ । ଏ ଆରୋହାନୁମାନକୁ ସରଳ ଗଣନାତ୍ମକ ଆରୋହାନୁମାନ (୩୮) କୁହାଯାଏ । ଏଠାରେ କେତେକ ସମପ୍ରକାରର ଦୃଷ୍ଟାନ୍ତର ଗଣନା କରି ତତ୍ ସମ୍ପୃକ୍ତ ସାର୍ବିକ ସିଦ୍ଧାନ୍ତକୁ ସତ୍ୟ ବୋଲି ଗ୍ରହଣ କରି ନିଆଯାଏ । ବେକନ୍ ଏ ପ୍ରକାର ଆରୋହାନୁମାନକୁ ବାଳସୁଲଭ ଏବଂ ଯଥାର୍ଥ ଜ୍ଞାନ ପ୍ରଦାନ ନିମିତ୍ତ ଅନୁପଯୁକ୍ତ ବୋଲି

---

(୩୮) Induction per simple enumeration.

ବିବେଚନା କରୁଥିଲେ । ସରଳଗଣନାଭିତ୍ତିକ ଆରୋହାନୁମାନ ଦ୍ୱାରା ପ୍ରତିଷ୍ଠିତ 'ସମସ୍ତ କାକ କୃଷ୍ଣ'-ତର୍କବାକ୍ୟଟି ଏପର୍ଯ୍ୟନ୍ତ ସତ୍ୟ ହୋଇ ରହିଛି । କିନ୍ତୁ ଏ ପ୍ରକାର ଆରୋହାନୁମାନଲବ୍ଧ 'ସମସ୍ତ ରାଜହଂସ ଶ୍ୱେତ'-ତର୍କବାକ୍ୟ ଏବେ ମିଥ୍ୟା ବୋଲି ପ୍ରତିପାଦିତ ହୋଇଛି । ତେଣୁ ସରଳ ଗଣନା ଭିତ୍ତିକ ଆରୋହାନୁମାନର ସିଦ୍ଧାନ୍ତକୁ ଅବିସମ୍ବାଦିତ ସତ୍ୟ ବୋଲି ଗ୍ରହଣ କରିବାରେ କୌଣସି ଯଥାର୍ଥତା ନାହିଁ । ଅନୁଭୂତ ଅତିରିକ୍ତ ଦୃଷ୍ଟାନ୍ତକୁ ସଂପ୍ରସାରିତ ହେଲେ ଏ ପ୍ରକାର ଅନୁମାନର ସିଦ୍ଧାନ୍ତ ମିଥ୍ୟା ହୋଇ ଯିବାର ସମ୍ଭାବନା ସର୍ବଦା ରହିଥାଏ । ଗୋଟିଏ ମାତ୍ର ବ୍ୟତିରେକୀ ଦୃଷ୍ଟାନ୍ତ ମଧ୍ୟ ଏ ପ୍ରକାର ଆରୋହାନୁମାନର ସିଦ୍ଧାନ୍ତକୁ ମିଥ୍ୟା ବୋଲି ପ୍ରତିପାଦନ କରିବା ନିମିତ୍ତ ଯଥେଷ୍ଟ । ସରଳଗଣନାଭିତ୍ତିକ ଆରୋହାନୁମାନର ଏହି ତ୍ରୁଟିର ନିରାକରଣ ନିମିତ୍ତ ସ୍କଲାଷ୍ଟିକ ଦାର୍ଶନିକମାନେ ପୂର୍ଣ୍ଣଗଣନାଭିତ୍ତିକ ଆରୋହାନୁମାନ (୩୯) ର ପ୍ରୟୋଗ କରୁଥିଲେ । ଗୋଟିଏ ନିର୍ଦ୍ଦିଷ୍ଟ ସଂଖ୍ୟକ ବସ୍ତୁବିଷୟକ ଜ୍ଞାନକୁ ଏଥିରେ ଗୋଟିଏ ସାର୍ବିକ ତର୍କବାକ୍ୟ ଦ୍ୱାରା ପ୍ରକାଶ କରାଯାଏ । ଉଦାହରଣ ସ୍ୱରୂପ ଜ୍ଞାତ ଗ୍ରହମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ସୂର୍ଯ୍ୟକିରଣ ଦ୍ୱାରା ଉଦ୍ଭାସିତ ହେବାର ଲକ୍ଷ୍ୟ କରି ସମସ୍ତ ଜ୍ଞାତ ଗ୍ରହ ସୂର୍ଯ୍ୟ ଦ୍ୱାରା ଉଦ୍ଭାସିତ ହୁଅନ୍ତି ବୋଲି ବ୍ୟକ୍ତ କରିବା ହେଉଛି ପୂର୍ଣ୍ଣ ଗଣନାଭିତ୍ତିକ ଆରୋହାନୁମାନ । ସେହିପରି ଜନ, ପିଟର, ମେଥ୍ୟୁ ପ୍ରଭୃତି ଯିଶୁଖ୍ରୀଷ୍ଟଙ୍କ ଦ୍ୱାରା ପ୍ରେରିତ ଧର୍ମସଂସ୍କାରକମାନଙ୍କ ମଧ୍ୟରୁ ପ୍ରତ୍ୟେକ ଇହୁଦୀ ହୋଇଥିବା ଲକ୍ଷ୍ୟ କରି 'ଯିଶୁଖ୍ରୀଷ୍ଟଙ୍କ ଦ୍ୱାରା ପ୍ରେରିତ ସମସ୍ତ ଧର୍ମ ସଂସ୍କାରକ ଇହୁଦୀ' ବୋଲି ବ୍ୟକ୍ତ କରିବା ହେଉଛି ପୂର୍ଣ୍ଣଗଣନାଭିତ୍ତିକ ଆରୋହାନୁମାନ । ଏ ପ୍ରକାର ଆରୋହାନୁମାନର ସିଦ୍ଧାନ୍ତ ନିର୍ଦ୍ଧାରିତ ଭାବେ ସତ୍ୟ ହୋଇଥିଲେ ମଧ୍ୟ ଏଥିରେ ଯେ ଜ୍ଞାନର ସମ୍ପ୍ରସାରଣ ନାହିଁ ଏହା ସୁସ୍ପଷ୍ଟ । ତେଣୁ ବେକନ୍ ଏହି ଆରୋହାନୁମାନକୁ ମଧ୍ୟ ଯଥୋପଯୁକ୍ତ ବୋଲି ମନେ କରୁ ନ ଥିଲେ ।

---

(୩୯) Perfect Induction or Induction per Complete enumeration.

ବେକନ୍‌ଙ୍କ ପ୍ରଯୋଜିତ ଅରୋହ ପଦ୍ଧତି ଉପର୍ଯ୍ୟୁକ୍ତ ଉଭୟ ପ୍ରକାର ଆରୋହାନୁମାନଠାରୁ ଭିନ୍ନ । ବେକନ୍ ତାଙ୍କ ଅରୋହ ପଦ୍ଧତିର ସୂଚନା ଦେବାକୁ ଯାଇ କହିଥିଲେ ଯେ ଏଥିରେ ଦୁଇଟି ବିଭାଗ ରହିବା ଆବଶ୍ୟକ । ପ୍ରଥମ ବିଭାଗଟି ହେଉଛି ନେତମୂଳକ । ମନୁଷ୍ୟର ଜ୍ଞାନ କେତେ ପ୍ରକାର ଅନ୍ଧ ସଂସ୍କାରର ବଶବର୍ତ୍ତୀ ହୋଇ ଭ୍ରାନ୍ତ ଧାରଣାରେ ଉପନୀତ ହୁଏ, ସେଗୁଡ଼ିକର ସୂଚନା ଦେବା ଏହାର ଲକ୍ଷ୍ୟ । ଯଥାର୍ଥ ଜ୍ଞାନ ଲାଭ କରିବା ନିମିତ୍ତ ଅନ୍ଧ ସଂସ୍କାର ଗୁଡ଼ିକର ପରିବର୍ଜନ ସର୍ବାଦୌ କର୍ତ୍ତବ୍ୟ । ତଦନନ୍ତର କୌଣସି ଏକ ନିର୍ଦ୍ଦିଷ୍ଟ ବିଷୟରେ ଜ୍ଞାନ ଆହରଣ କରିବା ନିମିତ୍ତ ସେହି ବିଷୟ ସମ୍ବନ୍ଧିତ ଘଟଣା ଗୁଡ଼ିକର ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ କରିବା ଆବଶ୍ୟକ । ଏହା ହେଉଛି ତାଙ୍କ ପଦ୍ଧତିର ଦ୍ୱିତୀୟ ବିଭାଗର କାର୍ଯ୍ୟ । ପୁନଃ ପୁନଃ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଦ୍ୱାରା ଇନ୍ଦ୍ରିୟାନୁଭୂତ ନିର୍ଦ୍ଦୋଷ ହୁଏ ଏବଂ ଉଦ୍ଦିଷ୍ଟ ବିଷୟରେ ସମ୍ୟକ ଜ୍ଞାନ ଅର୍ଜନ କରାଯାଇ ପାରେ । ତଥାପି ଏହାଦ୍ୱାରା ସାର୍ବଜନ ସ୍ୱଭାବର ଏକ ଅପରିହାର୍ଯ୍ୟ ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବପର ନୁହେଁ । ତେଣୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଲବ୍ଧ ବିଷୟାବଳୀର ବିଶ୍ଳେଷଣ କରି ଅବାନ୍ତର ଆନୁଷଙ୍ଗିକ ଘଟଣାଗୁଡ଼ିକର ଏକାଦିକ୍ରମେ ପରିହାର କରିବା ଦ୍ୱାରା ପରିଶେଷରେ ସନ୍ନିହିତ ପ୍ରାକୃତିକ ନିୟମର ଆବିଷ୍କାର କରାଯାଇ ପାରେ । ଏହି ପ୍ରଣାଳୀ ସହଜ ଓ ସୁନ୍ଦର ନୁହେଁ, କିନ୍ତୁ କେବଳ ଏହି ଅଧ୍ୟାବସାୟ ପ୍ରଣାଳୀ ସାହାଯ୍ୟରେହିଁ ଆବିଷ୍କୃତ ପ୍ରାକୃତିକ ନିୟମ ଯଥାର୍ଥରେ ସାର୍ବିକ ସ୍ୱଭାବ ତଥା ଅପରିହାର୍ଯ୍ୟ ଭାବେ ସତ୍ୟ ହେବା ସୁନିଶ୍ଚିତ ।

ଏହି ନୂତନ ତର୍କ ପଦ୍ଧତି ମାଧ୍ୟମରେ ବେକନ୍ ତାଙ୍କର କାର୍ଯ୍ୟ କ୍ରମର ତୃତୀୟ ଅଂଶର ଲକ୍ଷ୍ୟ ପୂରଣ ଅର୍ଥାତ୍ ବିଶ୍ୱପ୍ରକୃତିର ବିଭିନ୍ନ ବିଭାଗ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଲାଭ କରିବାକୁ ଆଶା କରୁଥିଲେ । ଏହା ଏକ ପରୀକ୍ଷଣ ମୂଳକ ପ୍ରାକୃତିକ ଇତିହାସ ହେବା ସ୍ୱାଭାବିକ । କିନ୍ତୁ ଏହା କେବଳ ସ୍ୱାଭାବିକ ଗତିରେ ପ୍ରକୃତ କାର୍ଯ୍ୟ କରୁଥିବା ଘଟଣାର ବର୍ଣ୍ଣନାରେ ସୀମିତ ନ ରହି କୃତ୍ରିମ ଅସ୍ୱାଭାବିକ ପରିସ୍ଥିତିରେ କିପରି ଭାବେ କାର୍ଯ୍ୟ

କରେ ଓ ତାହାର ମୌଳିକ ଧର୍ମଗୁଡ଼ିକ କଣ, ତାହାର ମଧ୍ୟ ବର୍ଣ୍ଣନା ହେବା ଆବଶ୍ୟକ । କିନ୍ତୁ ସମ୍ୟକ୍ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣଲବ୍ଧ ଘଟଣା ବ୍ୟତୀତ ଅନ୍ୟ କୌଣସି ଅଜାନ୍ତରେ ଓ କଳ୍ପନା ପ୍ରସୂତ ଘଟଣା ଏଥିରେ ସ୍ଥାନ ପାଇବା ଅନୁଚିତ । ପୂର୍ବରୁ ପ୍ରଚଳିତ ଏ ପ୍ରକାରର ଅନେକ ତଥାକଥିତ ଘଟଣାକୁ ବେକନ୍ ତାଙ୍କର ପ୍ରାକୃତିକ ଇତିହାସର ଅନ୍ତର୍ଭୁକ୍ତ ହେବା ନିମିତ୍ତ ଅଯୋଗ୍ୟ ବୋଲି ମତ ଦେଇଥିଲେ । ଅଥଚ ଆଷ୍ଟୁର୍ମିଜନଙ୍କ ମନେ ହେଲେ ସୁଦ୍ଧା ଯେଉଁ ଘଟଣାଗୁଡ଼ିକ ପରୀକ୍ଷଣ-ଲବ୍ଧ ସେଗୁଡ଼ିକ ପରୀକ୍ଷଣ ପ୍ରଣାଳୀର ବର୍ଣ୍ଣନା ସହ ପ୍ରାକୃତିକ ଇତିହାସରେ ସ୍ଥାନ ପାଇବା ଉଚିତ ବୋଲି ସେମାନେ କରୁଥିଲେ । ବେକନ୍‌ଙ୍କ ମତରେ କେବଳ ଏହି ଇତିହାସ ଅନ୍ତର୍ଗତ ଘଟଣା ଗୁଡ଼ିକର ସମୀକ୍ଷା କରି ପରିଶେଷରେ ଏକ ସର୍ବଜନଗ୍ରାହ୍ୟ ଯଥାର୍ଥ ଦର୍ଶନର ସୃଷ୍ଟି କରାଯାଇପାରେ । ତେଣୁ ପ୍ରକାରାନ୍ତରେ ସେ ଏହି ପରୀକ୍ଷଣମୂଳକ ପ୍ରାକୃତିକ ଇତିହାସକୁ ଦର୍ଶନର ଭିତ୍ତିଭୂମି ବୋଲି ବର୍ଣ୍ଣନା କରିଛନ୍ତି ।

ପରୀକ୍ଷଣମୂଳକ ପ୍ରାକୃତିକ ଇତିହାସର ବିଷୟବସ୍ତୁ ଉପରେ ନିର୍ଭର କରି ଦାର୍ଶନିକତଥ୍ୟ ରଚିତ ହେବା ଉଚିତ, ଏଥିରେ ସନ୍ଦେହ ନାହିଁ; ତଥାପି ତତ୍‌ପୂର୍ବରୁ ଏହି ଇତିହାସସନ୍ନିବିଷ୍ଟ ବିଷୟାବଳୀର ସମୀକ୍ଷା କରି ତାହାକୁ ଗୁରୁତ୍ୱ ଦୃଷ୍ଟିରୁ କ୍ରମାନୁସାରେ ବୁଦ୍ଧି ସମକ୍ଷରେ ଯଥାଯଥ ଭାବରେ ଉପସ୍ଥାପିତ କରିବାର ଆବଶ୍ୟକତା ରହିଛି । ବେକନଙ୍କର କାର୍ଯ୍ୟକ୍ରମର ଚତୁର୍ଥ ଅଂଶର ଏହାହିଁ ଲକ୍ଷ୍ୟ । ପ୍ରତ୍ୟେକ ବିଷୟର ଆବିଷ୍କାର, ଉଦ୍ଭାବନ ତଥା ତାହାଦ୍ୱାରା ସୃଷ୍ଟ ତଥ୍ୟ ଆଦର୍ଶ ଦୃଷ୍ଟାନ୍ତ ସହ ଉପସ୍ଥାପିତ ହେଲେ ତହିଁରୁ ସାମୂହିକଭାବେ ଏକ ଦାର୍ଶନିକ ଧାରଣା ଗଠନ କରିବା ସହଜସାଧ୍ୟ ହେବ ବୋଲି ବେକନ୍ ମନେ କରୁଥିଲେ ।

ବେକନଙ୍କ କାର୍ଯ୍ୟକ୍ରମର ପଞ୍ଚମ ଅଂଶ ହେଉଛି ସର୍ବଶେଷ ଅଂଶର ଆଂଶିକ ଉପଲବ୍ଧିଗୁଡ଼ିକ ଏବଂ ଏହା ସାମୟିକ ବ୍ୟବହାରୋପଯୋଗୀ । ଯଥାର୍ଥ ଦର୍ଶନ ନିମିତ୍ତ ଯଥେଷ୍ଟ ଉପାଦାନ ସଂଗୃହୀତ ହେଲେ ସୁଦ୍ଧା ସହସା

ଏକ ସିଦ୍ଧାନ୍ତରେ ଉପନୀତ ହୋଇ ତାହାକୁ ଅବିସମ୍ବାଦିତ ଦାର୍ଶନିକ ସିଦ୍ଧାନ୍ତ ବୋଲି ଗ୍ରହଣ କରିନେବା ଏକ ଦୁଃସାହସିକ କାର୍ଯ୍ୟ ବୋଲି ସେ ମନେ କରୁଥିଲେ । ତେଣୁ ତାଙ୍କ କାର୍ଯ୍ୟକ୍ରମର ପଞ୍ଚମ ଅଂଶରେ ସେ ନିଜଦ୍ୱାରା ଆବିଷ୍କୃତ, ପରୀକ୍ଷିତ ଓ ପ୍ରମାଣିତ କେତେକ ତଥ୍ୟ ଉପସ୍ଥାପିତ କରି ତାହା ପରିବର୍ତ୍ତନ ଓ ପରିବର୍ଦ୍ଧନ ସାପେକ୍ଷ ବୋଲି ମତ ଦେଇଥିଲେ ଏବଂ ତାହା ମାନବୀୟ ବୁଦ୍ଧିର ଚରମ ବିକାଶ ବା ବସ୍ତୁପ୍ରକୃତିର ସଂପୂର୍ଣ୍ଣ ପ୍ରକାଶ ହୋଇ ନ ପାରେ ବୋଲି ମନ୍ତବ୍ୟ ପ୍ରକାଶ କରିଥିଲେ । ତାଙ୍କ କାର୍ଯ୍ୟକ୍ରମର ଏହି ପଞ୍ଚମ ଅଂଶକୁ ବେକନ୍ ଯଥାର୍ଥ-ଦର୍ଶନ-ଲକ୍ଷ୍ୟ ପଥଶ୍ରିତ ପାନ୍ଥଶାଳା ସଦୃଶ ବୋଲି ବର୍ଣ୍ଣନା କରିଥିଲେ ।

ବେକନ୍‌ଙ୍କ କାର୍ଯ୍ୟକ୍ରମର ଅନ୍ତିମ ତଥା ଷଷ୍ଠ ଅଂଶ ଭ୍ରମଭ୍ରମମୁକ୍ତ, ବିଶୁଦ୍ଧ, ବିଧିବଦ୍ଧ ଏବଂ ଅନ୍ୱେଷା ତଥା ପ୍ରଜ୍ଞା-ସମ୍ଭୂତ ଦର୍ଶନର ଅଭିବ୍ୟକ୍ତି ଓ ଅଭିବୃଦ୍ଧି ନିମିତ୍ତ ଉଦ୍ଦିଷ୍ଟ । କାର୍ଯ୍ୟକ୍ରମର ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ଏହି ମୂଳ ଲକ୍ଷ୍ୟ ସାଧନ କଳ୍ପେ କରାଯାଇଥିଲା । ଏହି ଦର୍ଶନ ଦ୍ୱାରା ମାନବ ସମାଜର କେବଳ ମାନସିକ ଉତ୍କର୍ଷ ବିଧାନ ନୁହେଁ, ସମସ୍ତ କର୍ମରେ ସଫଳତା ତଥା ସୌଭାଗ୍ୟର ସୂଦିନ ଆସିବା ସମ୍ଭବପର ବୋଲି ସେ ମନେ କରୁଥିଲେ । ତାଙ୍କ ମତରେ କାରଣସମ୍ବନ୍ଧୀୟ ଜ୍ଞାନର ଅଭାବ ହେତୁ କାର୍ଯ୍ୟ ଫଳପ୍ରଦ ହୁଏ ନାହିଁ । ମନୁଷ୍ୟ ପ୍ରକୃତିର ଦାସତ୍ୱ ସ୍ୱୀକାର କରି ତାହାର କାର୍ଯ୍ୟାବଳୀର ଅନୁସନ୍ଧାନ, ଅନୁସରଣ ଓ ଅନୁକରଣଦ୍ୱାରା ପ୍ରକୃତି ଉପରେ ପ୍ରଭୁତ୍ୱ ବିସ୍ତାର କରିପାରେ । ଜ୍ଞାନ ଓ ଶକ୍ତି ପରସ୍ପରାପେକ୍ଷୀ । ତେଣୁ ଏହି କାରଣସମ୍ବନ୍ଧୀୟ ଜ୍ଞାନ-ସମ୍ବଳିତ କର୍ମାଭିମୁଖୀ ଦର୍ଶନଦ୍ୱାରା ମନୁଷ୍ୟ ଅପାର ଶକ୍ତିଭଣ୍ଡାରର ଅଧିକାରୀ ହୋଇ ତାହାର ଉପଯୋଗ କରିବାରେ ସମର୍ଥ ହୋଇ ପାରିବ । କିନ୍ତୁ ଏହି ଅଂଶ ଅସମାପ୍ତ ରହିବା ସ୍ୱାଭାବିକ ବୋଲି ବେକନ୍ ମତ ଦେଇଥିଲେ । କାରଣ ତାଙ୍କ ସମୟର ଅବସ୍ଥାରେ ମନୁଷ୍ୟର ମନ ଏ ପ୍ରକାର ଦର୍ଶନର କଳ୍ପନା ଓ ଧାରଣା କରିପାରିବା ମଧ୍ୟ ସହଜ ନୁହେଁ । ବେକନ୍ ଏହି ଦର୍ଶନର କେବଳ ପ୍ରାଥମିକ ପ୍ରସ୍ତୁତି କରି ତାହାର ପରିପୂର୍ତ୍ତିର ଦାୟିତ୍ୱ ତାଙ୍କର ଭବିଷ୍ୟତ ବଂଶଧରମାନଙ୍କ ଉପରେ ନ୍ୟସ୍ତକରି ଯାଇଥିଲେ

ଏବଂ ତାଙ୍କ ଦ୍ୱାରା ଆରବ୍‌ଧ ହୋଇଥିବା କାର୍ଯ୍ୟର ସୁଗୁରୁ ସମ୍ପାଦନ ନିଜ ଶକ୍ତିସାମର୍ଥ୍ୟର ବହିର୍ଭୂତ ବୋଲି ସ୍ପଷ୍ଟତଃ ସ୍ୱୀକାର କରିଥିଲେ ।

ବେକନ୍ ସ୍ୱଲିଖିତ ଗ୍ରନ୍ଥମାନଙ୍କରେ ଏହି କାର୍ଯ୍ୟକ୍ରମର ପ୍ରଥମ ଦୁଇଟି ଅଂଶର ସବିଶେଷ ଆଲୋଚନା କରି ଯାଇଛନ୍ତି । ଅନ୍ୟାନ୍ୟ ଅଂଶମାନଙ୍କର ଆଲୋଚନା ପ୍ରଥମ ଦୁଇଟି ଅଂଶରୁଳି ସୁସଂହତ ନୁହେଁ ।

ମହତ୍ ନବୀକରଣର ତୃତୀୟ ଅଂଶ ଅର୍ଥାତ୍ ପରୀକ୍ଷଣମୂଳକ ପ୍ରାକୃତିକ ଇତିହାସର ବିଷୟବସ୍ତୁ ଦୃଷ୍ଟିରୁ ତାହା ସର୍ବଦା ଅସଂପୂର୍ଣ୍ଣ ରହିବା ସ୍ୱାଭାବିକ । କିନ୍ତୁ ବେକନ୍‌ଙ୍କ ମତରେ ଏହିକାର୍ଯ୍ୟ ନିମିତ୍ତ ଯଥେଷ୍ଟ ସଂଖ୍ୟକ ଗବେଷକ ନିଯୁକ୍ତ ହେଲେ ଅଳ୍ପ ସମୟ ମଧ୍ୟରେ ଏହିପରି ଏକ ଇତିହାସର ସଂପୂର୍ଣ୍ଣ ସଙ୍କଳନ ସମ୍ଭବପର ଏବଂ ତହିଁରେ ସଂଯୋଗ କରିବା ନିମିତ୍ତ କୌଣସି ଅବଶେଷ ରହିବ ନାହିଁ । ଉପରେ ତାଙ୍କ ମତରେ ନୂତନ ତର୍କଶାସ୍ତ୍ରର ନିୟମାନୁସାରେ ଏହି ଇତିହାସ ସନ୍ନିବିଷ୍ଟ ବିଷୟବସ୍ତୁର କେବଳ ବ୍ୟାଖ୍ୟାନ ଆବଶ୍ୟକ । କିନ୍ତୁ ଏହି ଇତିହାସ ସଙ୍କଳନରେ ବେକନ୍‌ଙ୍କ ନିଜ ଅବଦାନର ପରିମାଣ ନିତାନ୍ତ ସ୍ୱଳ୍ପ । ସ୍ପେଡ଼ିଂ, ଏଲିସ ଏବଂ ହିଥ୍‌ଙ୍କ ସମ୍ପାଦନାରେ ପ୍ରକାଶିତ ବେକନ୍‌ଙ୍କ ଗ୍ରନ୍ଥାବଳୀର ଦ୍ୱିତୀୟ ଖଣ୍ଡରେ ବେକନ୍‌ଙ୍କ ଦ୍ୱାରା ଅନୁଷ୍ଠିତ କେତେକ ବୈଜ୍ଞାନିକ ଗବେଷଣାର ଉଲ୍ଲେଖ ରହିଅଛି । ବୈଜ୍ଞାନିକ ଅନୁସନ୍ଧାନରେ ତାଙ୍କର ଅଶେଷ ଅନୁରକ୍ତି ଥିଲେହେଁ ତାଙ୍କର କୌଣସି ବୈଜ୍ଞାନିକ ଗବେଷଣା ଉନ୍ନତ ଧରଣର ବା ଉଲ୍ଲେଖ-ଯୋଗ୍ୟ ନୁହେଁ ।

ମହତ୍ ନବୀକରଣର ଚତୁର୍ଥ ଓ ପଞ୍ଚମ ଅଂଶ ନିମିତ୍ତ ମଧ୍ୟ ବେକନ ବିଶେଷ କିଛି କରି ଯାଇ ନାହାନ୍ତି । ତାଙ୍କର କାର୍ଯ୍ୟ ଏହି ଅଂଶଗୁଡ଼ିକର ଭୂମିକା ବର୍ଣ୍ଣନରେହିଁ ସୀମିତ ।



## ତୃତୀୟ ପରିଚ୍ଛେଦ

# ବିଜ୍ଞାନର ବିଭାଗୀକରଣ

ବେକନ୍ ତାଙ୍କର 'ଜ୍ଞାନର ପ୍ରଗତି' ତଥା ତାହାର ପରିମାର୍ଜିତ ସଂସ୍କରଣ 'ବିଜ୍ଞାନ ମାନଙ୍କର ଅଭିବୃଦ୍ଧି ଓ ମହତ୍ତ୍ୱ' ପୁସ୍ତକରେ ବିଜ୍ଞାନର ସଂସ୍କାର ଓ ବିକାଶ ନିମିତ୍ତ ତାଙ୍କ ସମୟର ବିଜ୍ଞାନ ମାନଙ୍କର ଅନୁଶୀଳନ ବିଶ୍ଳେଷଣ, ଶ୍ରେଣୀକରଣ ତଥା ମୂଲ୍ୟାୟନ କରିଥିଲେ ।

ମାନବାତ୍ମାର ତିନୋଟି ମୁଖ୍ୟ ବୃତ୍ତି ସହିତ ସାମଞ୍ଜସ୍ୟ ରକ୍ଷି ସମଗ୍ର ମାନବୀୟ ବିଜ୍ଞାନକୁ ତିନୋଟି ବିଭାଗରେ ବିଭକ୍ତ କରାଯାଇପାରେ ବୋଲି ବେକନ୍ ମତ ଦେଇଥିଲେ । ସ୍ମୃତିରୁ ଇତିହାସ, କଳ୍ପନାରୁ କବିତା ଏବଂ ଚିନ୍ତନରୁ ଦର୍ଶନର ସୃଷ୍ଟି । ଇତିହାସକୁ ସାଧାରଣ ଇତିହାସ ଏବଂ ପ୍ରାକୃତିକ ଇତିହାସ ରୂପେ ଦୁଇଭାଗରେ ବିଭକ୍ତ କରାଯାଇପାରେ । ସାଧାରଣ ଇତିହାସରେ ତାଙ୍କ ମତରେ ଧର୍ମ, ସାହିତ୍ୟ ଏବଂ ଦର୍ଶନର ଇତିହାସ ମଧ୍ୟ ସ୍ଥାନ ପାଇବା ଉଚିତ । କିନ୍ତୁ ଏଗୁଡ଼ିକର ଯଥାଯଥ ଅନୁଶୀଳନର ଅଭାବ ସେ ଅନୁଭବ କରୁଥିଲେ । ପ୍ରାକୃତିକ ଇତିହାସରେ ପ୍ରକୃତିର କାର୍ଯ୍ୟକଳାପ ବର୍ଣ୍ଣିତ ହେବା ବିଧେୟ । କେଉଁ କ୍ଷେତ୍ରରେ ପ୍ରକୃତି ନିର୍ବିଘ୍ନରେ କାର୍ଯ୍ୟକରେ, କେଉଁ କ୍ଷେତ୍ରରେ ତାହା ବିଭ୍ରାନ୍ତ ହୁଏ ଏବଂ କେଉଁ କ୍ଷେତ୍ରରେ ତାହାକୁ ନିୟନ୍ତ୍ରିତ କରାଯାଇପାରେ ତାହା ନିର୍ଣ୍ଣୀତ ହେବା

ଆବଶ୍ୟକ । କିନ୍ତୁ ଏହି ବିଷୟକ ଜ୍ଞାନ ନିତାନ୍ତ ତ୍ରୁଟିପୂର୍ଣ୍ଣ ଅବସ୍ଥାରେ ରହିଛି ବୋଲି ସେ ମନେ କରୁଥିଲେ ।

ବେକନଙ୍କ ମତରେ କବିତା ତିନିପ୍ରକାର, ଯଥା—ବର୍ଣ୍ଣନାମୂଳକ (୧) ନାଟକମୂଳକ ଏବଂ ନୀତିମୂଳକ (୨) । ଶେଷୋକ୍ତ ପ୍ରକାରର କବିତାକୁ ସେ ଶ୍ରେଷ୍ଠ ସ୍ଥାନ ଦେଉଥିଲେ ।

ବିଷୟବସ୍ତୁ ଦୃଷ୍ଟିରୁ ଦର୍ଶନକୁ ବେକନ୍ ତିନୋଟି ଭାଗରେ ବିଭକ୍ତ କରିଥିଲେ, ଯଥା—ଈଶ୍ୱର ସମ୍ବନ୍ଧୀୟ, ପ୍ରକୃତି ସମ୍ବନ୍ଧୀୟ ଏବଂ ମାନବ ସମ୍ବନ୍ଧୀୟ । କିନ୍ତୁ ଏହି ତିନୋଟି ଯାହା ଉପରେ ପ୍ରତିଷ୍ଠିତ ଅର୍ଥାତ୍ ମୂଳ ଦର୍ଶନ (୩) କେତେକ ଈଶ୍ୱର ସମ୍ବନ୍ଧୀୟ ତଥ୍ୟ, କେତେକ ପଦାର୍ଥ ସମ୍ବନ୍ଧୀୟ ତଥ୍ୟ ଏବଂ କେତେକ ତର୍କ ସମ୍ବନ୍ଧୀୟ ତଥ୍ୟର ସମ୍ମିଶ୍ରଣ ମାତ୍ର ନ ହୋଇ ବରଂ ଯଥାର୍ଥ ସୀମାତୀତ ବିଷୟର ଧାରଣା ଓ ସ୍ୱତଃସିଦ୍ଧ ସତ୍ୟର ଆଲୋଚନାରେ ପର୍ଯ୍ୟବସିତ ହେବା ବିଧେୟ । ଏହା କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ବିଷୟକ ନ ହୋଇ ବରଂ ସମ୍ଭବ ଓ ଅସମ୍ଭବର ସୀମା ନିର୍ଦ୍ଦେଶ କରିବା ଉଚିତ ।

ବେକନ୍ ଦର୍ଶନର ଉପର୍ଯ୍ୟୁକ୍ତ ତିନୋଟି ବିଭାଗକୁ ଦୃଷ୍ଟି କ୍ଷେତ୍ରରେ ଆଲୋକ ରଶ୍ମି ସହିତ ତୁଳନା କରିଛନ୍ତି । ଈଶ୍ୱର ସମ୍ବନ୍ଧୀୟ ଜ୍ଞାନ ଆଲୋକ ରଶ୍ମିର ଅନ୍ୟ ମାଧ୍ୟମରେ ପ୍ରବେଶ ହେତୁ ଭଗ୍ନୀକୃତ ଅବସ୍ଥା ତୁଲ୍ୟ; ପ୍ରକୃତି ସମ୍ବନ୍ଧୀୟ ଜ୍ଞାନ ଋଜୁ ଆଲୋକ ରଶ୍ମି ସହିତ ତୁଳନୀୟ ଏବଂ ମାନବ ସମ୍ବନ୍ଧୀୟ ଜ୍ଞାନ ପ୍ରତିବିମ୍ବିତ ଆଲୋକ ରଶ୍ମି ସହିତ ତୁଳନୀୟ । ଏହି କାରଣରୁ ପ୍ରାକୃତିକ ଧର୍ମତତ୍ତ୍ୱ କେବଳ ନିରୀଶ୍ୱରବାଦର ଖଣ୍ଡନରେ ସୀମିତ ହେବା ଉଚିତ । ଆଗ୍ରହାତିଶଯ୍ୟ ହେତୁ ଧର୍ମମତର ପ୍ରମାଣ କରିବାର ପ୍ରୟାସ କରାଯାଇଥାଏ । କିନ୍ତୁ ଧର୍ମମତ ବିଶ୍ୱାସ ଉପରେ ପ୍ରତିଷ୍ଠିତ; ବିଜ୍ଞାନ

(୧) Narrative (i.e. epic)
(୨) Parabolic (i.e. didactic)
(୩) Philosophia prima

ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଓ ତର୍କସମ୍ମତ ଚିନ୍ତନ ଉପରେ ପ୍ରତିଷ୍ଠିତ । ଯାହା ଜ୍ଞେୟ, ତାହା ଜ୍ଞାନ ସାହାଯ୍ୟରେ ଏବଂ ଯାହା ବିଶ୍ୱାସ୍ୟ, ତାହା ବିଶ୍ୱାସ ସାହାଯ୍ୟରେହିଁ ଗ୍ରହଣୀୟ । ଜ୍ଞାନ କ୍ଷେତ୍ରରେ ବିଶ୍ୱାସର ସ୍ଥାନ ନାହିଁ; ସେହିପରି ବିଶ୍ୱାସ କ୍ଷେତ୍ରରେ ଯୁକ୍ତିତର୍କର ସ୍ଥାନ ନାହିଁ । ଜ୍ଞାନ ଓ ବିଶ୍ୱାସର ଅବୈଧ ସମ୍ମିଶ୍ରଣ ହେତୁ ଉଭୟ କ୍ଷେତ୍ରରେ ବିଭ୍ରାନ୍ତିହିଁ ସାର ହୋଇଥାଏ । ବିଶ୍ୱାସ-ପ୍ରତିଷ୍ଠିତ ଧର୍ମନୀତି ଅଯୌକ୍ତିକ ମନେ ହେଲେ ବିଚଳିତ ହେବା ଅନୁଚିତ, କାରଣ ଏହି ଅଯୌକ୍ତିକତା ବିଶ୍ୱାସରାଜ୍ୟରେହିଁ ସୀମିତ । କୌଣସି କ୍ରୀଡ଼ାରେ ଅଂଶ ଗ୍ରହଣ କରିବାକୁ ହେଲେ ଯେତେ ବିଚିତ୍ର ହେଲେସୁଦ୍ଧା ତାହାର ନିୟମାବଳୀକୁ ଗ୍ରହଣ କରି ନେବାକୁ ହୋଇଥାଏ । ସେହିପରି ଧର୍ମଭାବାପନ୍ନ ହେବା ନିମିତ୍ତ ଯୁକ୍ତିତର୍କକୁ ପରିହାର କରିବାକୁ ପଡ଼େ । ପକ୍ଷାନ୍ତରରେ ବିଜ୍ଞାନ ବିଶ୍ୱାସମୂଳକ ନୁହେଁ । ତେଣୁ ଏଠାରେ ସାକ୍ଷ୍ୟ-ପ୍ରମାଣ ଓ ଯୌକ୍ତିକତା ବିନା କୌଣସି ସିଦ୍ଧାନ୍ତ ଗ୍ରହଣୀୟ ନୁହେଁ । ବିଜ୍ଞାନର ପ୍ରଥମ ଆବିର୍ଭାବ କାଳରେହିଁ ବୈଜ୍ଞାନିକ ଧର୍ମତନ୍ତ୍ରକୁ ଆକ୍ରମଣ କରିଥାଏ । କିନ୍ତୁ ବିଜ୍ଞାନ କ୍ଷେତ୍ରରେ ସାମୂହିକ ଧାରଣା ଜାତ ହେବାପରେ ବୈଜ୍ଞାନିକର ହୃଦ୍‌ବୋଧ ହୁଏ ଯେ ବିଜ୍ଞାନର ପରିସର ଧର୍ମର ପରିସରଠାରୁ ଭିନ୍ନ । ତେଣୁ ଈଶ୍ୱର ବିଶ୍ୱାସ ହେତୁ ବୈଜ୍ଞାନିକ ଗବେଷଣା ଓ ପ୍ରଗତି କ୍ଷୁଣ୍ଣ ହେବାର କୌଣସି ଆଶଙ୍କା ନାହିଁ ।

ଦର୍ଶନର ଦ୍ୱିତୀୟ ବିଭାଗ ଅର୍ଥାତ୍ ପ୍ରାକୃତିକ ଦର୍ଶନକୁ ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ; ଯଥା—ଚିନ୍ତାମୂଳକ ପ୍ରାକୃତିକ ଦର୍ଶନ ଏବଂ କର୍ମମୂଳକ ପ୍ରାକୃତିକ ଦର୍ଶନ । ଚିନ୍ତାମୂଳକ ପ୍ରାକୃତିକ ଦର୍ଶନ ପ୍ରାକୃତିକ ନିୟମ ସମ୍ବନ୍ଧୀୟ ଜ୍ଞାନ ଆହରଣ କରେ ଏବଂ କର୍ମମୂଳକ ପ୍ରାକୃତିକ ଦର୍ଶନ ଏହି ନିୟମମାନଙ୍କର ପ୍ରୟୋଗ ଶିକ୍ଷା ଦିଏ । ଏହି ପ୍ରତ୍ୟେକ ବିଭାଗ ପୁଣି ଦୁଇଟି ଲେଖାଏଁ ଉପବିଭାଗରେ ବିଭକ୍ତ । ଚିନ୍ତାମୂଳକ ପ୍ରାକୃତିକ ଦର୍ଶନକୁ ପଦାର୍ଥ ବିଜ୍ଞାନ ଓ ତତ୍ତ୍ୱବିଜ୍ଞାନ (୪)ରୂପେ ଏବଂ କର୍ମମୂଳକ

(୪) Physics and Metaphysics

ପ୍ରାକୃତିକ ଦର୍ଶନକୁ ଶିଳ୍ପବିଦ୍ୟା ଓ ପ୍ରାକୃତିକ ଯାଦୁବିଦ୍ୟା (୫) ରୂପେ ଭାଗ କରାଯାଇପାରେ । ପଦାର୍ଥବିଜ୍ଞାନ ଶିଳ୍ପବିଦ୍ୟା ସହିତ ସଂପୃକ୍ତ ଏବଂ ତତ୍ତ୍ୱବିଜ୍ଞାନ ପ୍ରାକୃତିକ ଯାଦୁବିଦ୍ୟା ସହିତ ସଂପୃକ୍ତ । ତତ୍ତ୍ୱବିଜ୍ଞାନକୁ ମୂଳ ଦର୍ଶନର ନାମାନ୍ତର ମାତ୍ର ବୋଲି ମନେ କରାଯାଇଥାଏ; କିନ୍ତୁ ଏହି ଧାରଣା ଭ୍ରାନ୍ତ । ଏହା ପ୍ରାକୃତିକ ଦର୍ଶନର ଅଂଶ ବିଶେଷ । ପଦାର୍ଥ ବିଜ୍ଞାନରେ ଉପାଦାନ ଓ ନିମିତ୍ତ କାରଣ (୬)ର ଆଲୋଚନା କରାଯାଏ; କିନ୍ତୁ ତତ୍ତ୍ୱବିଜ୍ଞାନରେ ଆକୃତିକ ଓ ଅନ୍ତିମ କାରଣର ଧାରଣା ଗଠନ କରାଯାଏ । ଏଥିନିମିତ୍ତ ବେକନ୍ ପଦାର୍ଥବିଜ୍ଞାନ ମୂର୍ତ୍ତି ଘଟଣା ଏବଂ ତତ୍ତ୍ୱବିଜ୍ଞାନ ଅମୂର୍ତ୍ତି ତଥା ଅପରିବର୍ତ୍ତନୀୟ ବିଷୟ ସହିତ ସଂପୃକ୍ତ ବୋଲି ବ୍ୟାଖ୍ୟା କରୁଥିଲେ । କିନ୍ତୁ ପଦାର୍ଥ-ବିଜ୍ଞାନରେ ମଧ୍ୟ ଦୁଇଟି ଅଂଶ ଥିବା କଥା ସେ ସ୍ୱୀକାର କରୁଥିଲେ । ତାହାର ନିମ୍ନାଂଶ ପ୍ରାକୃତିକ ଇତିହାସ ତୁଲ୍ୟ ଏବଂ ତାହାର ବିଷୟବସ୍ତୁ ବାସ୍ତବ ପଦାର୍ଥ; କିନ୍ତୁ ତାହାର ଊର୍ଦ୍ଧାଂଶ ତତ୍ତ୍ୱବିଜ୍ଞାନ ତୁଲ୍ୟ ଏବଂ ତାହା ଏହି ପଦାର୍ଥ ଗୁଡ଼ିକର ସ୍ୱଭାବ ଓ ଗୁଣ ନିର୍ଣ୍ଣୟ କରେ ।

ବେକନ୍ ତାଙ୍କ ସମୟର ପଦାର୍ଥବିଜ୍ଞାନ, ତତ୍ତ୍ୱବିଜ୍ଞାନ, ଜ୍ୟୋତି-ର୍ବିଜ୍ଞାନ ଇତ୍ୟାଦିର କାର୍ଯ୍ୟକଳାପରେ ସନ୍ତୁଷ୍ଟ ନ ଥିଲେ । କାରଣ ଏଗୁଡ଼ିକ

---

(୫) Mechanics ond Natural magic

(୬) ଆରିଷ୍ଟୋଟଲଙ୍କ ମତରେ ପ୍ରତ୍ୟେକ କାର୍ଯ୍ୟର ଚାରି ପ୍ରକାର କାରଣ ଥାଏ । ସେଗୁଡ଼ିକ ହେଉଛି ଉପାଦାନ କାରଣ **(material cause)**, ଆକୃତିକ କାରଣ **(formal cause)**, ନିମିତ୍ତ କାରଣ **(efficient cause)** ଏବଂ ଅନ୍ତିମ କାରଣ **(final cause)** । ପ୍ରସ୍ତର ନିର୍ମିତ ଗୋଟିଏ ବୁଦ୍ଧମୂର୍ତ୍ତିର ଉପାଦାନ କାରଣ ହେଉଛି ପ୍ରସ୍ତର; ଆକୃତିକ କାରଣ ହେଉଛି ବୁଦ୍ଧାକୃତି; ନିମିତ୍ତ କାରଣ ହେଉଛି ପ୍ରସ୍ତରରୁ ମୂର୍ତ୍ତି ନିର୍ମାଣରେ ନିୟୋଜିତ ପରିଶ୍ରମ, ଶକ୍ତି, କୌଶଳ ଇତ୍ୟାଦି ଏବଂ ଅନ୍ତିମ କାରଣ ହେଉଛି ମୂର୍ତ୍ତି ନିର୍ମାଣର ଉଦ୍ଦେଶ୍ୟ ।

ଯଥାଯଥ ଭାବେ ପରିଶେଷରେ ଧର୍ମଶାସ୍ତ୍ର ବିଷୟବସ୍ତୁର ଆଲୋଚନା ଓ ଗବେଷଣା କରିବା ପରିବର୍ତ୍ତେ ପରସ୍ପର ସହିତ ଏପରି ଭାବରେ ସଂଶ୍ଳିଷ୍ଟ ବୋଲି ବିବେଚିତ ହେଉଥିଲେ ଯେ କୌଣସି ଗୋଟିକ କ୍ଷେତ୍ରରେ ଆଲୋଚନା କଲାବେଳେ ନାନା ଅପ୍ରାସଙ୍ଗିକ ଘଟଣାର ଅବତାରଣା କରିବା ସମୀଚୀନ ବୋଲି ମନେ କରାଯାଉ ଥିଲା । ବେକନ୍ ଗଣିତ ଶାସ୍ତ୍ର ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରୁ ନ ଥିଲେ ଏବଂ ଏହା ପଦାର୍ଥ ବିଜ୍ଞାନର ଏକ ପରିଶିଷ୍ଟ ଅଂଶ ରୂପେ ରହିବା ବିଧେୟ ବୋଲି ମନେ କରୁଥିଲେ ।

ଦର୍ଶନର ତୃତୀୟ ବିଭାଗ ଅର୍ଥାତ୍ ମାନବ ସମ୍ବନ୍ଧୀୟ ଦର୍ଶନକୁ ବେକନ୍ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରୁଥିଲେ । ପ୍ରଥମଭାଗ ମନୁଷ୍ୟକୁ କେବଳ ଗୋଟିଏ ବ୍ୟକ୍ତିରୂପେ ଅର୍ଥାତ୍ ସମାଜ ସହିତ ଅସଂପୃକ୍ତ ଏକକ ରୂପେ ବିଚାର କରି ତାହା ସମ୍ବନ୍ଧରେ ଜ୍ଞାନଲାଭ କରେ । ଦ୍ୱିତୀୟଭାଗ ମନୁଷ୍ୟକୁ ଗୋଟିଏ ନାଗରିକ ରୂପେ ଅର୍ଥାତ୍ ସମାଜର ଏକ ଅଂଶ ରୂପେ ବିଚାର କରି ତାହା ସମ୍ବନ୍ଧରେ ଜ୍ଞାନଲାଭ କରେ । ପ୍ରଥମ ଭାଗର କେତେକାଂଶ ମନୁଷ୍ୟର ଶରୀର ସମ୍ବନ୍ଧୀୟ ଏବଂ କେତେକାଂଶ ତାହାର ଆତ୍ମା ସମ୍ବନ୍ଧୀୟ । କିନ୍ତୁ ଏହି ଦୁଇ ଅଂଶର ଆଲୋଚନା ପୂର୍ବରୁ ମନୁଷ୍ୟର ସ୍ୱଭାବ । ତାହାର ବ୍ୟକ୍ତିତ୍ୱ ଏବଂ ଉଭୟର ପାରସ୍ପରିକ ସମ୍ବନ୍ଧର ମଧ୍ୟ ଆଲୋଚନା ଆବଶ୍ୟକ ।

ମନୁଷ୍ୟର ଶରୀର-ସମ୍ବନ୍ଧୀୟ ଆଲୋଚନାରେ ଚିକିତ୍ସା, ସୌନ୍ଦର୍ଯ୍ୟ, ସାମର୍ଥ୍ୟ ଏବଂ ସୁଖ ବିଷୟକ ବିଜ୍ଞାନଗୁଡ଼ିକ ଅନ୍ତର୍ଭୁକ୍ତ । ସୁଖ ବିଷୟକ ବିଜ୍ଞାନରେ କବିତା ବ୍ୟତୀତ ଅନ୍ୟାନ୍ୟ ସୂକ୍ଷ୍ମକଳାର ମଧ୍ୟ ଆଲୋଚନା କରାଯିବା ଉଚିତ ।

ଦର୍ଶନର ଆତ୍ମାସମ୍ବନ୍ଧୀୟ ଆଲୋଚନାରେ ଧର୍ମଶାସ୍ତ୍ରର ବିମୂର୍ତ୍ତ ଅଲୌକିକ ମାନବାତ୍ମାର ସ୍ଥାନ ନାହିଁ । ଏଠାରେ ଜୀବାତ୍ମାକୁ ଗୋଟିଏ

ସୂକ୍ଷ୍ମ ଭୌତିକ ପଦାର୍ଥ ରୂପେ ବିବେଚନା କରାଯାଏ ଏବଂ ଏହି ଆତ୍ମାର ଅନୁଭୂତି, ଉପଲବ୍‌ଧି ଓ ଅନ୍ୟାନ୍ୟ କାର୍ଯ୍ୟକଳାପର ଅନୁସନ୍ଧାନ କରାଯାଏ । ତର୍କବିଜ୍ଞାନ ଓ ନୀତିବିଜ୍ଞାନ ଆତ୍ମାର କାର୍ଯ୍ୟକଳାପ ସହିତ ସଂପୃକ୍ତ । ତର୍କବିଜ୍ଞାନ ଜ୍ଞାନ, ସତ୍ୟାନୁସାର ଇତ୍ୟାଦିର ଆଲୋଚନା କରେ । ତେଣୁ ଦ୍ୱନ୍ଦ୍ୱମୂଳକ ବିଦ୍ୟା (୭), ସ୍ମୃତିସହାୟକ ବିଦ୍ୟା (୮), ବ୍ୟାକରଣ ଶାସ୍ତ୍ର, ଅଳଙ୍କାର ଶାସ୍ତ୍ର (୯) ଇତ୍ୟାଦି ଏହାର ଅନ୍ତର୍ଗତ । ନୀତିବିଜ୍ଞାନ ଆତ୍ମାର ମଙ୍ଗଳକର ବା ହିତକର କର୍ମରେ ପ୍ରବୃତ୍ତି ସମ୍ବନ୍ଧରେ ଆଲୋଚନା କରେ । ତେଣୁ ତର୍କବିଜ୍ଞାନ 'ସତ୍ୟ' ସମ୍ବନ୍ଧୀୟ ବିଜ୍ଞାନ ହୋଇଥିବା ସ୍ଥଳେ ନୀତି-ବିଜ୍ଞାନ 'ଶିବ' ସମ୍ବନ୍ଧୀୟ ବିଜ୍ଞାନ ଅଟେ ବୋଲି କୁହାଯାଇପାରେ ।

ନୀତିବିଜ୍ଞାନ ଦୁଇଭାଗରେ ବିଭକ୍ତ । ଗୋଟିଏ ବିଭାଗରେ 'ଶିବ'ର ରୂପରେଖ ନିର୍ଣ୍ଣୟ ଏବଂ ଅନ୍ୟବିଭାଗରେ କର୍ମ ପ୍ରବୃତ୍ତିର ଉତ୍କର୍ଷ ବିଧାନର ନିୟମାବଳୀର ବିଚାର କରାଯାଏ । ନୀତିବିଜ୍ଞାନ କେବଳ ବ୍ୟକ୍ତିକୈନ୍ଦ୍ରିକ ହିତର ବିଚାରରେ ସୀମିତ ନୁହେଁ; ଏହା ସାମାଜିକ ହିତର ମଧ୍ୟ ଆଲୋଚନା କରେ । ନୈତିକତା ଦୃଷ୍ଟିରୁ ମନୁଷ୍ୟ କେବଳ ନିଜପାଇଁ ନୁହେଁ, ପରପାଇଁ ମଧ୍ୟ ଜୀବନ ଧାରଣ କରେ ବୋଲି କୁହାଯାଇପାରେ । ବେକନଙ୍କ ମତରେ ଏହି ବିଷୟ ତାଙ୍କର ପୂର୍ବବର୍ତ୍ତୀ ଦାର୍ଶନିକମାନେ ଯଥୋପଯୁକ୍ତଭାବରେ ଉପଲବ୍‌ଧି କରି ପାରି ନ ଥିଲେ ।

ମାନବସମ୍ବନ୍ଧୀୟ ଦର୍ଶନର ଦ୍ୱିତୀୟଭାଗ ହେଉଛି ରାଜନୀତି ବିଜ୍ଞାନ । ଏହାର ବିଷୟବସ୍ତୁ ହେଉଛି ସାମାଜିକ, ବ୍ୟାବସାୟିକ ଓ ନାଗରିକ ଜୀବନ । ଏଠାରେ ଦାର୍ଶନିକର ମତାମତ ଅପେକ୍ଷା ରାଷ୍ଟ୍ରନୀତିଜ୍ଞର ମତାମତ ଅଧିକ ମୂଲ୍ୟବାନ୍ । ବେକନ୍‌ଙ୍କ ମତରେ ରାଷ୍ଟ୍ର ହେଉଛି ଏପରି ଏକ ସଂସ୍ଥା ଯାହାଦ୍ୱାରା

---

(୭) Dialectic
(୮) Mnemonics
(୯) Rhetorics

କେବଳ ଯେ ବ୍ୟକ୍ତିଗତ ଅଧିକାର ସୁରକ୍ଷିତ ହୁଏ, ତାହା ନୁହେଁ; ଏହା ଧର୍ମ, ନୈତିକତା ଓ ବୈଦେଶିକ ରାଷ୍ଟ୍ରମାନଙ୍କ ସହିତ ସମ୍ପର୍କ ନିୟନ୍ତ୍ରଣ କରି ନାଗରିକମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନ ମଧ୍ୟ କରିଥାଏ । ରାଜନୀତି-ବିଜ୍ଞାନରେ ରାଷ୍ଟ୍ରର ନିୟମାବଳୀ ପ୍ରଣୟନ ଓ ସେମାନଙ୍କର ପ୍ରୟୋଗ ପଦ୍ଧତି ସମ୍ବନ୍ଧୀୟ ବିଷୟର ଆଲୋଚନା ମଧ୍ୟ ଅନ୍ତର୍ଭୁକ୍ତ ।

ବେକନ୍ ଈଶ୍ୱର-ପ୍ରକଟିତ ଧର୍ମତତ୍ତ୍ୱକୁ ଦର୍ଶନର ପରିସର-ବହିର୍ଭୂତ ବୋଲି ବିବେଚନା କରୁଥିବାରୁ ବାଇବେଲ୍‌ରୁ ଦର୍ଶନ ଶିକ୍ଷା କରିବା ଅଥବା ବାଇବେଲ୍‌କୁ ଦାର୍ଶନିକର ଦୃଷ୍ଟିରୁ ବିଚାର କରିବା ଅଯୌକ୍ତିକ ବୋଲି ମନେ କରୁଥିଲେ । ତେଣୁ ତାଙ୍କର ପୂର୍ବସୂରିମାନଙ୍କ ଦର୍ଶନରେ ଖ୍ରୀଷ୍ଟଧର୍ମର ପ୍ରଭାବ ସୁସ୍ପଷ୍ଟ ହୋଇଥିଲେ ମଧ୍ୟ ସେ ତାଙ୍କର ନିଜର ଦର୍ଶନରେ ଖ୍ରୀଷ୍ଟଧର୍ମର ସମର୍ଥନମୂଳକ ଯୁକ୍ତି ଏବଂ ବାଇବେଲ୍ ବର୍ଣ୍ଣିତ ଧର୍ମତତ୍ତ୍ୱର ବିଚାରକୁ ସମ୍ପୂର୍ଣ୍ଣରୂପେ ବାଦ୍ ଦେଇଥିଲେ ।

ବେକନ୍ ତାଙ୍କ ସମୟର ବିଜ୍ଞାନଗୁଡ଼ିକର ଅନୁଶୀଳନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ବିଜ୍ଞାନ ତଥା ଦର୍ଶନର ଦୁରବସ୍ଥା ଓ ଅନୁନ୍ନତିର ମୁଖ୍ୟ କାରଣ ହେଉଛି ପୂର୍ବସୂରିମାନଙ୍କ ମତାମତର ଅନ୍ଧାନୁସରଣ ଏବଂ ବୈଜ୍ଞାନିକ ଜ୍ଞାନଆହରଣ ନିମିତ୍ତ ଯଥୋପଯୁକ୍ତ ପଦ୍ଧତିର ଅଭାବ । ତେଣୁ ଜ୍ଞାନଜଗତ୍ ସମ୍ବନ୍ଧରେ ଏକ ସାମୂହିକ ଧାରଣା ପ୍ରଦାନ କରିପାରି ବିଜ୍ଞାନମାନଙ୍କର ଅଭିବୃଦ୍ଧି ନିମିତ୍ତ ସେ ଅନ୍ଧସଂସ୍କାରର ନିରାକରଣ ନିମନ୍ତେ ଏବଂ ଏକ ନବୀନ ଜ୍ଞାନାହରଣ ପଦ୍ଧତିର ଆବିଷ୍କାର ନିମନ୍ତେ ଯତ୍ନବାନ୍ ହୋଇଥିଲେ ।



# ଚତୁର୍ଥ ପରିଚ୍ଛେଦ

# ନୂତନ ସାଧନ

ବେକନଙ୍କ ମତରେ ପୂର୍ବପୁରୁଷମାନଙ୍କ ମତାମତକୁ ନିର୍ବିଘ୍ନରେ ସମ୍ପୂର୍ଣ୍ଣଭାବେ ଗ୍ରହଣ କରିନେବା ଅଯୌକ୍ତିକ ଏବଂ ପ୍ରଗତିବିରୋଧୀ । ପ୍ରାଚୀନ ଦାର୍ଶନିକମାନଙ୍କ ସମୟଠାରୁ ତାଙ୍କ ସମୟ ପର୍ଯ୍ୟନ୍ତ ଥିବା ବ୍ୟବଧାନ ମଧ୍ୟରେ ଅନେକ ବୈଜ୍ଞାନିକ ଆବିଷ୍କାର ହୋଇ ସାରିଥିଲା; ପାରିପାର୍ଶ୍ୱିକ ଅବସ୍ଥାର ବହୁ ପରିବର୍ତ୍ତନ ଘଟିଥିଲା; ମନୁଷ୍ୟର ଚିନ୍ତାଶକ୍ତି, ଅଭିଜ୍ଞତା ଓ ପାରସ୍ପରିକ ସମ୍ବନ୍ଧରେ ସମଧିକ ଅଭିବୃଦ୍ଧି ଘଟିଥିଲା । କିନ୍ତୁ ପୁରାତନ ଦାର୍ଶନିକ ଚିନ୍ତାଧାରାର ବିଶେଷତଃ ଆରିଷ୍ଟୋଟଲ୍‌ଙ୍କର ଦର୍ଶନର ପ୍ରଭାବ ଆଦୌ କ୍ଷୁଣ୍ଣ ହୋଇ ନ ଥିଲା । ବେକନ୍‌ଙ୍କ ମତରେ ଏହା ଶୁଭ ଲକ୍ଷଣ ନୁହେଁ । ବେକନ୍ ବିଶେଷତଃ ତିନୋଟି ମହତ୍ ଆବିଷ୍କାରର କଥା ଉଲ୍ଲେଖ କରୁଥିଲେ । ସେ ଗୁଡ଼ିକ ହେଉଛି ଆଗ୍ନେୟାସ୍ତ୍ର, ମୁଦ୍ରଣଯନ୍ତ୍ର ଏବଂ ଦିକ୍ ନିର୍ଣ୍ଣୟ ଯନ୍ତ୍ର । ଏଗୁଡ଼ିକର ଏବଂ ଏ ପ୍ରକାର ଅନ୍ୟାନ୍ୟ ଉଦ୍‌ଭାବନର ଉପଯୋଗ ଫଳରେ ମନୁଷ୍ୟର ଜ୍ଞାନ ଓ ଶକ୍ତିର ସୀମା ପ୍ରସାରିତ ହେଉଥିଲା । ତେଣୁ ପୁରାତନ ଦର୍ଶନରୁ ଯଥାଯୋଗ୍ୟ ଉପାଦାନ ସଂଗ୍ରହ କରି ଏକ ଯୁଗୋପଯୋଗୀ ଦର୍ଶନର ଭିତ୍ତି ନୂତନଭାବେ ସ୍ଥାପିତ ହେବା ନିତାନ୍ତ ଆବଶ୍ୟକ ବୋଲି ସେ ମନେ କରୁଥିଲେ । ପୁରାତନ ଦାର୍ଶନିକମାନେ

ଦର୍ଶନଶାସ୍ତ୍ରକୁ ବ୍ୟକ୍ତିଗତ ଜୀବନର ଜ୍ଞାନାହରଣମୂଳକ ବିନୋଦନ ମାତ୍ର ବୋଲି ଗ୍ରହଣ କରୁଥିଲେ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ଏହା ଗ୍ରହଣଯୋଗ୍ୟ ହୋଇ ନ ପାରେ । ଯଥାର୍ଥରେ ଏହା ସମଗ୍ର ମନୁଷ୍ୟ-ସମାଜର ସୁଖସମୃଦ୍ଧି-ବିଧାୟକ ହେବା ଉଚିତ ଏବଂ ଏହା ଏହି ଲକ୍ଷ୍ୟରେ ହିଁ ପରିଚାଳିତ ହେବା ଉଚିତ ବୋଲି ବେକନ୍ ମତ ପ୍ରଦାନ କରିଥିଲେ ।

ବେକନ୍‌ଙ୍କ ମତରେ ପୂର୍ବସୂରିମାନଙ୍କର ଅନେକ ଅମୂଲ୍ୟ ଅବଦାନ ଅବହେଳିତ ହୋଇ ରହିଛି, ଅଥଚ କେବଳ ପ୍ଲେଟୋ (୧) ଏବଂ ଆରିଷ୍ଟୋଟଲ୍‌ଙ୍କ ମତାମତ ଉପରେ ଅଯଥା ଗୁରୁତ୍ୱ ଅର୍ପଣ କରା ଯାଇଛି । ପ୍ଲେଟୋଙ୍କ ଦର୍ଶନରେ ଧର୍ମ ଓ ରାଜନୀତିକୁ ପ୍ରାଧାନ୍ୟ ଦିଆ ଯାଇଥିଲା ଏବଂ ପଦାର୍ଥ ବିଜ୍ଞାନ ଉପେକ୍ଷିତ ହୋଇ ଯାଇଥିଲା । ସେହିପରି ଆରିଷ୍ଟୋଟଲ୍‌ଙ୍କ ଦର୍ଶନରେ ତର୍କଶାସ୍ତ୍ର ହିଁ ପ୍ରାଧାନ୍ୟ ଲାଭ କରିଥିଲା ଏବଂ ପଦାର୍ଥବିଜ୍ଞାନର ଯଥୋଚିତ ଆଲୋଚନା କରାଯାଇ ନ ଥିଲା । ବେକନ୍‌ଙ୍କ ମତରେ ଡେମୋକ୍ରିଟାସ୍ (୨) ଏମ୍ପିଡୋକଲ୍‌ସ୍ (୩) ପ୍ରଭୃତି ପ୍ରାକୃତିକ ଦାର୍ଶନିକମାନଙ୍କର ଦର୍ଶନର ଉପଯୋଗିତା ଅନୁଭୂତ ହୋଇଥିଲେ ବିଜ୍ଞାନ ତଥା ଦର୍ଶନର ପ୍ରଭୂତ ଉନ୍ନତି ହୋଇ ପାରିଥାନ୍ତା । କାରଣ ଦାର୍ଶନିକମାନେ ପ୍ରାକୃତିକ ଘଟଣାବଳୀର ପ୍ରକୃତ କାରଣ ଆବିଷ୍କାର କରିବାରେ ସଚେଷ୍ଟ ଥିଲେ । ମନୁଷ୍ୟ ପ୍ରକୃତିକୁ ଜୟକରି ତାହାକୁ ନିଜର କର୍ତ୍ତୃତ୍ୱାଧୀନରେ ରଖିବାକୁ ହେଲେ ତାହା ଯେଉଁ ନିୟମମାନଙ୍କ ଦ୍ୱାରା ପରିଚାଳିତ ସେହି ବିଷୟରେ ସମ୍ୟକ୍ ଜ୍ଞାନର ଅଧିକାରୀ ହେବା ଆବଶ୍ୟକ । ତେଣୁ ପ୍ରାକୃତିକ ଦର୍ଶନ ଦର୍ଶନଶାସ୍ତ୍ରର ସର୍ବପ୍ରଧାନ ଅଙ୍ଗରୂପେ ବିବେଚିତ ହେବା ବିଧେୟ ।

---

(୧) Plato (427-347 B. C.)
(୨) Democritus (460-370 B. C.)
(୩) Empedocles (495-435 B. C.)

ଆରିଷ୍ଟୋଟଲ୍‌ଙ୍କ ଜ୍ଞାନ ଆହରଣର ବୈଜ୍ଞାନିକ ପଦ୍ଧତିରେ ଏ ପଦୀ-ଯୁକ୍ତିହିଁ ପ୍ରଧାନ ଅବଲମ୍ବନ । ଆରିଷ୍ଟୋଟଲ୍‌ଙ୍କ ପରବର୍ତ୍ତୀ ଯୁଗର ସ୍କଲାଷ୍ଟିକ୍ ତାର୍କିକମାନେ (୪) ମଧ୍ୟ ଏହାର ବ୍ୟତିକ୍ରମ କରି ନଥିଲେ । ଆରିଷ୍ଟୋଟଲ୍ ତଥା ସ୍କଲାଷ୍ଟିକ୍ ତାର୍କିକମାନେ ଆରୋହ ତର୍କପଦ୍ଧତି ଅପେକ୍ଷା ଅବରୋହ ତର୍କପଦ୍ଧତିରେ ଅଧିକ ଗୁରୁତ୍ୱ ଆରୋପ କରୁଥିବା ହେତୁ ବୈଜ୍ଞାନିକ ଆବିଷ୍କାର କ୍ଷେତ୍ରରେ ବିଶେଷ ଅଗ୍ରଗତି କରି ପାରି ନ ଥିଲେ । ସେମାନେ ଯେ ଆରୋହ ପଦ୍ଧତି ସମ୍ବନ୍ଧରେ ଆଦୌ ସଚେତନ ନ ଥିଲେ ଏ କଥା ନୁହେଁ । କିନ୍ତୁ ସେମାନଙ୍କର ଆରୋହ ପଦ୍ଧତିକୁ ଏକ ଯଥୋପଯୁକ୍ତ ପଦ୍ଧତି ବୋଲି କୁହାଯାଇ ନ ପାରେ । କାରଣ ଏହି ପଦ୍ଧତି ଦ୍ୱାରା ଦୃଷ୍ଟ ଦୃଷ୍ଟାନ୍ତର ଏକତ୍ରୀକରଣ ଅଥବା ପ୍ରକଳ୍ପ ପ୍ରଣୟନ କରାଯାଇ ପାରେ; କିନ୍ତୁ ଏତଦ୍ଦ୍ୱାରା ପ୍ରକୃତିସମ୍ବନ୍ଧୀୟ ଯଥାର୍ଥ ଜ୍ଞାନରେ ଉପନୀତ ହେବା ସମ୍ଭବପର ନୁହେଁ । ପକ୍ଷାନ୍ତରରେ ଅବରୋହ ପଦ୍ଧତି ଦ୍ୱାରା କେବଳ ଜ୍ଞାତ ବିଷୟାନ୍ତର୍ଗତ ବସ୍ତୁମାନଙ୍କ ସମ୍ବନ୍ଧରେ ବିଶ୍ଳେଷଣାତ୍ମକ ଜ୍ଞାନ ଅର୍ଜନ କରାଯାଇପାରେ, କିନ୍ତୁ କୌଣସି ନୂତନ ତଥ୍ୟର ଆବିଷ୍କାର କରାଯାଇପାରେ ନାହିଁ । ତେଣୁ ବେକନ୍ ତାଙ୍କ ସମୟର ଆବିଷ୍କାର ପ୍ରବୃତ୍ତିର ସଫଳ ନିୟୋଜନ ନିମିତ୍ତ ଗୋଟିଏ ଉନ୍ନତ ଧରଣର ନୂତନ ତର୍କ ପଦ୍ଧତିର ପ୍ରବର୍ତ୍ତନ ଆବଶ୍ୟକ ବୋଲି ମନେ କରୁଥିଲେ । ଏ ପର୍ଯ୍ୟନ୍ତ ଆବିଷ୍କାର ପ୍ରକୃତିର ଅନୁକୂଳତା ଉପରେ ନିର୍ଭରଶୀଳ ଥିଲା । କିନ୍ତୁ ଏହି ନୂତନ ତର୍କ ପଦ୍ଧତି ଦ୍ୱାରା ବୈଜ୍ଞାନିକ ଗବେଷଣା କାର୍ଯ୍ୟ ଆବିଷ୍କାରର ପ୍ରୟୋଗ ବିଦ୍ୟାଭିମୁଖୀ ହେବ ବୋଲି ସେ ଆଶା କରୁଥିଲେ ।

ବେକନ୍ ତାଙ୍କର ଜ୍ଞାନ ଏବଂ ଦୃଷ୍ଟ (୫) ପୁସ୍ତକ ଏବଂ ତାହାର ପରିବର୍ଦ୍ଧିତ ସଂସ୍କରଣ 'ନୂତନ ସାଧନ' ପୁସ୍ତକରେ ଏହି ନୂତନ ତର୍କ

---

(୪) Scholastic Logicians of the Medieval period

(୫) Cogitata et Visa

ପଦ୍ଧତିର ରୂପରେଖ ବର୍ଣ୍ଣନ କରିଥିଲେ । ଏହାର ମୁଖ୍ୟ ଉଦ୍ଦେଶ୍ୟ ପ୍ରକୃତିର ବ୍ୟାଖ୍ୟାକରଣ ।

ଉପସ୍ଥିତ ପ୍ରକୃତିକୁ ବୋଧଗମ୍ୟ କରିବା ବା ତାହାର ଯଥାର୍ଥ ବ୍ୟାଖ୍ୟା କରିବା ସମୟରେ ଅବାନ୍ତର ବିଷୟର ନିରାକରଣ ସର୍ବାଦୌ କର୍ତ୍ତବ୍ୟ । କୌଣସି ପ୍ରାକ୍‌କଳ୍ପନାର ବଶବର୍ତ୍ତୀ ନ ହୋଇ ଉପସ୍ଥିତ ପ୍ରକୃତିର ସମ୍ୟକ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣଦ୍ୱାରା ଲବ୍‌ଧ ତଥ୍ୟ ସାହାଯ୍ୟରେହିଁ ପ୍ରକୃତିର ଯଥାର୍ଥ ବ୍ୟାଖ୍ୟା ସମ୍ଭବପର । ପ୍ରକୃତିର ବହିରାବରଣରେ ବିମୋହିତ ନ ହୋଇ ତାହାର ଅନ୍ତର୍ନିହିତ ସତ୍ୟ ଆବିଷ୍କାର କରିବା କିମ୍ବା ପ୍ରାଥମିକ ସଂସ୍ପର୍ଶ ଦ୍ୱାରା ହିଁ ସମ୍ପାଦିତ ହୋଇଥାଏ । ତେଣୁ ଚିରାଚରିତ ପ୍ରଥାରେ ଅନାୟାସଲବ୍‌ଧ ଜ୍ଞାନକୁ ତଥା ଯେ କୌଣସି ବ୍ୟକ୍ତିର ଅପରୀକ୍ଷିତ ଜ୍ଞାନକୁ ସନ୍ଦେହ ଚକ୍ଷୁରେ ଦେଖିବା ନିମିତ୍ତ ବେକନ୍ ଉପଦେଶ ଦେଇଥିଲେ ।

ବେକନ୍‌ଙ୍କ 'ସଂଶୟ' ସଂଶୟବାଦୀମାନଙ୍କର (୬) ସଂଶୟଠାରୁ ଭିନ୍ନ । ବେକନ୍ ପର୍ଯ୍ୟବେକ୍ଷଣ କିମ୍ବା ମନନ କୌଣସିଟିର କାର୍ଯ୍ୟକାରିତାରେ ସଂଶୟ କରୁ ନ ଥିଲେ । ସଂଶୟବାଦୀମାନେ ସମସ୍ତ ଜ୍ଞାନ ସଂଶୟାତ୍ମକ ବୋଲି ଗ୍ରହଣ କରନ୍ତି । କିନ୍ତୁ ବେକନ୍ ଅବୈଜ୍ଞାନିକ ରୀତିରେ ସଂଗୃହୀତ ହୋଇଥିବାରୁ ଅଦ୍ୟାବଧି ଲବ୍‌ଧଜ୍ଞାନ ସଂଶୟାତ୍ମକ ବୋଲି ମନେ କରୁଥିଲେ । ପୁନଶ୍ଚ ସେ କୌଣସି ଜ୍ଞାନକୁ ଅଗ୍ରାହ୍ୟ ବୋଲି ପରିହାର କରି ନ ଦେଇ ତାହାକୁ ଗ୍ରହଣଯୋଗ୍ୟ କରିବା ନିମିତ୍ତ ଆଗ୍ରହୀ ଥିଲେ, କାରଣ ମନୁଷ୍ୟର ଯଥାର୍ଥ ଜ୍ଞାନ ଅନ୍ୱେଷଣ କରିବାର ଶକ୍ତିରେ ତାଙ୍କର ଅଗାଧ ବିଶ୍ୱାସ ରହିଥିଲା ।

ବେକନ୍‌ଙ୍କର ସଂଶୟ ଦେକାର୍ତ୍ତଙ୍କ (୭) ସଂଶୟଠାରୁ ମଧ୍ୟ ଭିନ୍ନ । ଦେକାର୍ତ୍ତ ଜାଗତିକ ସମସ୍ତ ବସ୍ତୁର ଜ୍ଞାନ ସଂଶୟମୂଳକ ବୋଲି ଗ୍ରହଣ

(୬) Sceptics
(୭) Descartes (1596-1650)

କରୁଥିଲେ । କିନ୍ତୁ ବେକନ୍ ପର୍ଯ୍ୟବେକ୍ଷଣଲବ୍ଧ ଜାଗତିକ ବସ୍ତୁ ତଥା ଈଶ୍ୱରଙ୍କର ସ୍ଥିତିରେ ସନ୍ଦେହର ଆଦୌ ଅବକାଶ ନାହିଁ ବୋଲି ବିଶ୍ୱାସ କରୁଥିଲେ । ତେଣୁ ବେକନ୍‌ଙ୍କର ସଂଶୟ କେବଳ ଅନ୍ଧସଂସ୍କାରଜନିତ ଭ୍ରମାତ୍ମକ ଧାରଣାରେ ହିଁ ସୀମିତ ବୋଲି କୁହାଯାଇପାରେ ।

## ଅନ୍ଧସଂସ୍କାର

ବେକନ୍ ପ୍ରଥମେ ତିନି ପ୍ରକାର ଅନ୍ଧସଂସ୍କାର କଥା ଉଲ୍ଲେଖ କରିଥିଲେ । କିନ୍ତୁ ପରେ ତାଙ୍କର 'ନୂତନ ସାଧନ' ଗ୍ରନ୍ଥର ପ୍ରଥମ ଭାଗରେ ସର୍ବମୋଟ ଚାରିପ୍ରକାର ଅନ୍ଧସଂସ୍କାର ବର୍ଣ୍ଣନା ଉପସ୍ଥାପିତ କରିଥିଲେ । ସେଗୁଡ଼ିକ ହେଉଛି—

[୧] ଜାତିଗତ ବା ମାନବୀୟ ପ୍ରକୃତି ହେତୁକ ଅନ୍ଧସଂସ୍କାର (୮)
[୨] ବ୍ୟକ୍ତିଗତ ବା କୂପମଣ୍ଡୂକତା ହେତୁକ ଅନ୍ଧସଂସ୍କାର (୯)
[୩] ଭାଷାଗତ ବା ଲୋକସମ୍ପର୍କ ହେତୁକ ଅନ୍ଧସଂସ୍କାର (୧୦)
[୪] ରଙ୍ଗମଞ୍ଚଗତ ବା ପ୍ରଚଳିତ ପ୍ରଥାହେତୁକ ଅନ୍ଧସଂସ୍କାର (୧୧)

### ଜାତିଗତ ବା ମାନବୀୟ ପ୍ରକୃତି-ହେତୁକ ଅନ୍ଧସଂସ୍କାର

ବେକନ୍‌ଙ୍କ ମତରେ ଏ ପ୍ରକାର ଅନ୍ଧସଂସ୍କାର ମନୁଷ୍ୟ ଜାତିର ପ୍ରତ୍ୟେକ ବ୍ୟକ୍ତିଠାରେ ଅଳ୍ପାଧିକ ପରିମାଣରେ ପରିଲକ୍ଷିତ ହୁଏ । ଏହା ମନୁଷ୍ୟର ପ୍ରକୃତିଗତ । ବିଶ୍ୱର ପ୍ରକୃତି ଯେପରି, ତାହାକୁ ସେହିପରି ଭାବେ ଗ୍ରହଣ କରିବା ପରିବର୍ତ୍ତେ ତହିଁରେ ସଙ୍ଗତି ଏବଂ ନିୟମାନୁବର୍ତ୍ତିତା

(୮) Idola tribus
(୯) Idola specus
(୧୦) Idola fori
(୧୧) Idola theatri

ରହିବା ଅନିବାର୍ଯ୍ୟ ବୋଲି ମନେକରି ମନୁଷ୍ୟ ସେହି ଦୃଷ୍ଟିଭଙ୍ଗି ଲକ୍ଷ୍ୟ କରେ । ଏତଦ୍ଦ୍ୱାରା ବ୍ୟତିରେକୀ ଦୃଷ୍ଟାନ୍ତ ଅବହେଳିତ ହୋଇଯାଏ ଏବଂ ଯଥାର୍ଥଜ୍ଞାନ ଲାଭ ବାଧା-ପ୍ରାପ୍ତ ହୁଏ । ଯାହା କେତୋଟି ଦୃଷ୍ଟାନ୍ତରେ ପରିଲକ୍ଷିତ ହୁଏ ତାହା ସର୍ବତ୍ର ଅନୁରୂପଭାବେ ସଂଘଟିତ ହୁଏ ବୋଲି ଧାରଣା କରିବା ମାନବ ମନର ଗୋଟିଏ ସାଧାରଣ ଧର୍ମ । କିନ୍ତୁ ପ୍ରକୃତି ମାନବ ମନର ଧାରଣାନୁରୂପ କି ନୁହେଁ, ପରୀକ୍ଷା କରି ଦେଖିବା ନିମିତ୍ତ କାହାରି ଧୈର୍ଯ୍ୟ ନ ଥାଏ । ମନୁଷ୍ୟ ମାତ୍ରେ ହିଁ ନିଜର ଆଶା, ଆକାଙ୍‌କ୍ଷା ଇତ୍ୟାଦି, ଅନୁରକ୍ତିର ପ୍ରତିଫଳନ ବିଶ୍ୱପ୍ରକୃତିରେ ପ୍ରକଟିତ ହୋଇଥିବା ବିଷୟ ଲକ୍ଷ୍ୟ କରିବାରେ ଆଗ୍ରହୀ । ପୁଣି ପ୍ରାକୃତିକ ଘଟଣାବଳୀରେ ଉଦ୍ଦେଶ୍ୟ ଆରୋପ କରିବା ମଧ୍ୟ ତାହାର ସ୍ୱଭାବଗତ । ପ୍ରାକୃତିକ ଘଟଣା ସଂଘଟନ ଉଦ୍ଦେଶ୍ୟ ପ୍ରଣୋଦିତ ହୋଇଥିବାର ଧାରଣା ମାନବର କଳ୍ପନା ପ୍ରସୂତ; କିନ୍ତୁ ତାହା ପୂର୍ବବର୍ତ୍ତୀ ଘଟଣାବଳୀର ପରିଣତି ହୋଇଥିବା ଅନୁଭୂତି ସିଦ୍ଧ । ତେଣୁ ପ୍ରାକୃତିକ ଘଟଣା ଗୁଡ଼ିକର କାରଣ ନିରୂପଣ କ୍ଷେତ୍ରରେ ପରିଣାମ କାରଣର ବିଚାର ପରିବର୍ତ୍ତେ ନିମିତ୍ତ କାରଣର ବିଚାର କରିବା ଆବଶ୍ୟକ ବୋଲି ବେକନ୍ ମନେ କରୁଥିଲେ ।

ବେକନ୍‌ଙ୍କ ମତରେ ଇନ୍ଦ୍ରିୟାନୁଭୂତିଲବ୍ଧ ଜ୍ଞାନକୁ ମଧ୍ୟ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି କୁହାଯାଇ ନ ପାରେ । ପ୍ରଥମତଃ ମନୁଷ୍ୟର ଅବବୋଧ ସୀମିତ ଶକ୍ତିସମ୍ପନ୍ନ । ତେଣୁ ବୈଜ୍ଞାନିକ ଯନ୍ତ୍ରାଦିର ବ୍ୟବହାର ଦ୍ୱାରା ଏହାର ପରିସର ବୃଦ୍ଧି କରିବାର ଆବଶ୍ୟକତା ରହିଛି । ତଥାପି ଭ୍ରାନ୍ତ ଦର୍ଶନଜନିତ ଦୂରବେକ୍ଷଣଜନିତ ଦୋଷରୁ ସମ୍ପୂର୍ଣ୍ଣ ମୁକ୍ତ ହେବା ସମ୍ଭବପର ନୁହେଁ । କିନ୍ତୁ ସମ୍ୟକ ଦର୍ଶନଲବ୍ଧ ମାନବୀୟଜ୍ଞାନ ମଧ୍ୟ ସଂଶୟାତ୍ମକ ବୋଲି ମନେ କରିବାର ଯଥେଷ୍ଟ ଅବକାଶ ରହିଛି । କାରଣ ମନୁଷ୍ୟର ଇନ୍ଦ୍ରିୟାନୁଭୂତିକୁ ବିଶ୍ୱପ୍ରକୃତିର ପରିମାପକ ବୋଲି ମନେ କରିବା କଦାପି ଯୁକ୍ତିଯୁକ୍ତ ହୋଇ ନ ପାରେ । ମନୁଷ୍ୟର ଇନ୍ଦ୍ରିୟ-ମନ-ଲବ୍ଧ ସମସ୍ତ ଜ୍ଞାନ ମାନବୀୟ ପ୍ରକୃତି-ସଂଶ୍ଳିଷ୍ଟ ଏବଂ ଏକ ଅସ୍ୱଚ୍ଛ ଦର୍ପଣର ପ୍ରତିଫଳନ ତୁଲ୍ୟ ଏହା ବିଶ୍ୱ ପ୍ରକୃତିର ଏକ ବିକୃତ ପ୍ରତିକୃତି

ମାତ୍ର । ତେଣୁ ଯଥାର୍ଥ ଜ୍ଞାନଲାଭ ନିମିତ୍ତ ଏହି ବିକୃତ ପ୍ରତିକୃତିର ଯଥା ସମ୍ଭବ ସଂସ୍କାର ଆବଶ୍ୟକ । ଅନ୍ୟଥା ମାନବୀୟ ପ୍ରକୃତିହେତୁକ ଅନ୍ଧସଂସ୍କାରରୁ ମୁକ୍ତିଲାଭ କରିବା ସମ୍ଭବପର ନୁହେଁ ।

## ବ୍ୟକ୍ତିଗତ ବା କୂପମଣ୍ଡୂକତା ହେତୁକ ଅନ୍ଧସଂସ୍କାର

ବେକନ୍‌ଙ୍କ ମତରେ ଏ ପ୍ରକାର ଅନ୍ଧସଂସ୍କାର ବ୍ୟକ୍ତିଗତ-ଜୀବନ-ସମ୍ଭୂତ ଏବଂ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ । ପ୍ରତ୍ୟେକ ମନୁଷ୍ୟ ଭିନ୍ନ ଭିନ୍ନ ଗୁମ୍ଫାରେ ଆବଦ୍ଧ ଜୀବଗୁଡ଼ିକ, ଭିନ୍ନ ଭିନ୍ନ କୂପନିବାସୀ ମଣ୍ଡୂକଗୁଡ଼ିକ । ପ୍ରତ୍ୟେକ ବ୍ୟକ୍ତିର ପ୍ରକୃତି, ପରମ୍ପରା, ପାରିପାର୍ଶ୍ୱିକ ଅବସ୍ଥା ଅନ୍ୟଠାରୁ ପୃଥକ୍ । ପୁଣି ଅନୁଭୂତି, ଅନୁରକ୍ତି, ଶିକ୍ଷା, ଦୀକ୍ଷା, ରୁଚି, ଅରୁଚି, ଆସକ୍ତି, ବିରକ୍ତି ଭେଦରେ ଜଣକର ସ୍ୱଭାବ ଓ ସ୍ୱାନୁଭୂତି ଅନ୍ୟଜଣଙ୍କର ସ୍ୱଭାବ ଓ ସ୍ୱାନୁଭୂତିଠାରୁ ଭିନ୍ନ ହେବା ସ୍ୱାଭାବିକ । ତେଣୁ ସ୍ୱାନୁଭୂତିକୁ ସାର୍ବଜନୀନ ମନେକରି ସେହି ଦୃଷ୍ଟିରୁ ବିଶ୍ୱପ୍ରକୃତିକୁ ସନ୍ଦର୍ଶନ କରିବା ଦ୍ୱାରା ଜ୍ଞାନ ଅଯଥା ସଙ୍କୁଚିତ ଓ କଳୁଷିତ ହୋଇଯାଏ ।

କେତେକ ବ୍ୟକ୍ତି ନିଜଦ୍ୱାରା ପ୍ରତିଷ୍ଠିତ ଅଥବା ନିଜେ ପାରଦର୍ଶିତା ଲାଭ କରିଥିବା ବିଜ୍ଞାନ ବା ଚିନ୍ତାଧାରାରେ ଏପରି ବିମୋହିତ ହୋଇ ଯାଆନ୍ତି ଯେ, ତାଙ୍କର ସମଗ୍ର ଜୀବନଦର୍ଶନ ଏହି ବିଜ୍ଞାନ ବା ଚିନ୍ତାଧାରା ଦ୍ୱାରା ଅଯଥା ପ୍ରଭାବିତ ଓ ଅନୁରଞ୍ଜିତ ହୋଇଯାଏ । ଆରିଷ୍ଟୋଟଲ୍‌ଙ୍କର ପ୍ରାକୃତିକ ଦର୍ଶନ ତାଙ୍କର ତର୍କପଦ୍ଧତିଦ୍ୱାରା, ଗିଲ୍‌ବର୍ଟ(୧)ଙ୍କ ଦର୍ଶନ ତାଙ୍କର ଚୁମ୍ବକ ପ୍ରସ୍ତର-ସମ୍ବନ୍ଧୀୟ ଗବେଷଣା ଦ୍ୱାରା ଏହିପରିଭାବେ ପ୍ରଭାବିତ ହୋଇଥିବାରୁ ତାହା ଗ୍ରହଣଯୋଗ୍ୟ ନୁହେଁ ବୋଲି ବେକନ୍ ମନେ କରୁଥିଲେ ।

ବୈଜ୍ଞାନିକ ଓ ଦାର୍ଶନିକମାନଙ୍କ ମଧ୍ୟରୁ କେତେକ ସୂକ୍ଷ୍ମାତିସୂକ୍ଷ୍ମ ବୈଷମ୍ୟ ଲକ୍ଷ୍ୟ କରିବାରେ ଅଭ୍ୟସ୍ତ, ଅନ୍ୟ କେତେକ ସେହିପରି ସାମ୍ୟ

(୧) William Gilbert (1540-1603)

ଲକ୍ଷ୍ୟ କରିବାରେ ଅଭ୍ୟସ୍ତ । କିନ୍ତୁ ଏହି ଉଭୟ ଶ୍ରେଣୀର ବ୍ୟକ୍ତି ସ୍ୱଭାବ ଦୋଷରୁ ଅତିରଞ୍ଜନରେ ଲିପ୍ତ ରହି ପରିଶେଷରେ ଭ୍ରାନ୍ତଧାରଣାର ବଶବର୍ତ୍ତୀ ହୋଇଥାନ୍ତି । ସେହିପରି କେତେକେ ପୁରାତନର ଉପାସକ ଏବଂ ଅନ୍ୟ କେତେକେ ନୂତନର ସ୍ୱାଗତିକା ଗାନରେ ପରିତୃପ୍ତ । କିନ୍ତୁ ଏହି ପ୍ରକୃତିଗତ ପାର୍ଥକ୍ୟର ପରିଣତି ବିଜ୍ଞାନ ଓ ଦର୍ଶନ ନିମିତ୍ତ ଯେ କ୍ଷତିକାରକ ହୋଇଥାଏ, ଏଥିରେ ସନ୍ଦେହ ନାହିଁ । ଏହାଦ୍ୱାରା ଦଳୀୟ ମନୋବୃତ୍ତି ପୁଷ୍ଟି ଲାଭ କରେ, କିନ୍ତୁ ସତ୍ୟାନୁସନ୍ଧାନ ବ୍ୟାହତ ହୁଏ । ବିଶ୍ୱପ୍ରକୃତିରେ ଶାଶ୍ୱତ ସତ୍ୟର ସ୍ୱାକ୍ଷର ନିତ୍ୟ ବିଦ୍ୟମାନ । ପର୍ଯ୍ୟବେକ୍ଷଣ ଦ୍ୱାରା ଏହା ଯେ କୌଣସି ଯୁଗର ଯେ କୌଣସି ସତ୍ୟାନୁସନ୍ଧିତ୍ସୁ ବ୍ୟକ୍ତି ଲାଭ କରିପାରେ । ତେଣୁ ଏହା କୌଣସି ଗୋଟିଏ ଯୁଗରେ ଅବଦାନ ହୋଇ ନ ପାରେ ।

ଲିଉସିପସ୍ ଓ ଡେମୋକ୍ରିଟସ୍ (୧୩) ପ୍ରାକୃତିକ ବସ୍ତୁର ବିଶ୍ଳେଷଣ ତଥା ତାହାର ଆଭ୍ୟନ୍ତରୀଣ ଅଣୁ ପରମାଣୁର ଗବେଷଣାରେ ନିମଗ୍ନ ରହି ତାହାର ଗଠନ ବିଷୟକ ଜ୍ଞାନକୁ ଉପେକ୍ଷା କରି ଯାଇଥିଲେ । ପକ୍ଷାନ୍ତରରେ ଅନ୍ୟାନ୍ୟ ଗ୍ରୀକ୍ ଦାର୍ଶନିକମାନେ ପ୍ରାକୃତିକ ବସ୍ତୁର ଆକୃତିକ ଗଠନ ସନ୍ଦର୍ଶନରେ ମୁହ୍ୟମାନ ହୋଇ ତାହାର ଅଭ୍ୟନ୍ତରକୁ ଭେଦ କରିବାର ଅବକାଶ ପାଇ ନ ଥିଲେ । ବେକନଙ୍କ ମତରେ ଏହି ଉଭୟ ପ୍ରକାର ଗବେଷଣାର ସମନ୍ୱୟ ଦ୍ୱାରାହିଁ ଯଥାର୍ଥ ଜ୍ଞାନଲାଭ ସମ୍ଭବପର ।

କୂପମଣ୍ଡୂକତାହେତୁକ ଅନ୍ଧବିଶ୍ୱାସରୁ ତ୍ରାହି ପାଇବା ନିମିତ୍ତ ବେକନଙ୍କ ଉପଦେଶ ହେଉଛି ଯେ ପ୍ରକୃତିର ପର୍ଯ୍ୟବେକ୍ଷଣ କାଳରେ ମନ ଯାହାକୁ ଆଗ୍ରହାତିଶଯ୍ୟରେ ଗ୍ରହଣ କରିନିଏ ଏବଂ ତନ୍ମଧ୍ୟରେ ନିମଜ୍ଜିତ ରହି ଅପୂର୍ବ ତୁଷ୍ଟି ଲାଭ କରେ, ତାହାକୁହିଁ ସନ୍ଦେହଯୁକ୍ତ ମନେକରି ଅଧିକତର ମନୋନିବେଶ ସହକାରେ ନିରୀକ୍ଷଣ କରିବା ବିଧେୟ ।

---

(୧୩) **Leucippus (5th Century B. C.) and Democritus (460-370 B. C.)**

## ଭାଷାଗତ ବା ଲୋକସମ୍ପର୍କହେତୁକ ଅନ୍ଧସଂସ୍କାର

ବେକନ୍‌ଙ୍କ ମତରେ ସର୍ବସାଧାରଣରେ ବ୍ୟବହୃତ ଭାଷା ଅନ୍ତର୍ଗତ ଶବ୍ଦ ଓ ନାମଗୁଡ଼ିକ ଦ୍ୱାରା ଏପ୍ରକାର ଅନ୍ଧସଂସ୍କାରର ସୃଷ୍ଟି ହୋଇଥାଏ । ମନୁଷ୍ୟ-ମନୋଗତ ଭାବର ଅଭିବ୍ୟକ୍ତି ହେଉଛି ଭାଷା ଏବଂ ଏହା ଭାବଦ୍ୱାରାହିଁ ନିୟନ୍ତ୍ରିତ ହୁଏ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ପକ୍ଷାନ୍ତରରେ ଜଣକର ଭାଷାଦ୍ୱାରା ଅନ୍ୟ ଜଣକର ମନରେ ଭାବର ସୃଷ୍ଟି କରାଯାଏ ଏବଂ ଭାଷା ସାହାଯ୍ୟରେ ଭାବନା ଗତିଶୀଳ ହୁଏ । ସର୍ବସାଧାରଣରେ ବ୍ୟବହୃତ ଭାଷାରେ ସାଧାରଣ ଲୋକର ବୋଧଗମ୍ୟ ହେବା ଉପଯୋଗୀ ଶବ୍ଦଦ୍ୱାରା ବସ୍ତୁବର୍ଗ ସୂଚିତ ହୁଅନ୍ତି ଏବଂ ବସ୍ତୁମାନଙ୍କର ଶ୍ରେଣୀବିଭାଗ ତଥା ସେମାନଙ୍କର ନାମକରଣ ମଧ୍ୟ ସାଧାରଣ ବ୍ୟକ୍ତିର ଦୃଷ୍ଟିକୋଣରୁହିଁ କରାଯାଇଥାଏ । କିନ୍ତୁ ଭାଷାଦ୍ୱାରା ପ୍ରଭାବିତ ହୋଇ ମନୁଷ୍ୟ ମନରେ ଏପରି ଦୃଢ଼ ଧାରଣା ସୃଷ୍ଟି ହୋଇଯାଏ ଯେ ତାହାଦ୍ୱାରା ପରବର୍ତ୍ତୀ ଯୁଗର ଅଧିକତର ଧୀମାନ୍ ବ୍ୟକ୍ତିର ଆୟାସସାଧ୍ୟ ଗବେଷଣା-ଲବ୍ଧ ଯଥୋପଯୁକ୍ତ ପରିବର୍ତ୍ତନ ମଧ୍ୟ ଗୃହୀତ ହେବାରେ ଅନ୍ତରାୟ ସୃଷ୍ଟି ହୁଏ । ବିଜ୍ଞମାନଙ୍କର ବସ୍ତୁ ସମ୍ବନ୍ଧୀୟ 'ବାଦ' ଅନେକକ୍ଷେ ଭାଷାଗତ 'ବିତଣ୍ଡା'ରେହିଁ ପର୍ଯ୍ୟବସିତ ହୋଇଯାଏ । ଏଥିନିମିତ୍ତ ଆଲୋଚନାର ପ୍ରାରମ୍ଭରୁ ତତ୍‌ସଂପୃକ୍ତ ଶବ୍ଦଗୁଡ଼ିକର ସଂଜ୍ଞା ନିର୍ଦ୍ଧାରଣ କରିନେବା ଆବଶ୍ୟକ । କିନ୍ତୁ ସଂଜ୍ଞା ମଧ୍ୟ ଭାଷା ମାଧ୍ୟମରେ ଦିଆଯାଉଥିବାରୁ ଏହାଦ୍ୱାରା ମଧ୍ୟ ଏହି ସମସ୍ୟାର ସମ୍ପୂର୍ଣ୍ଣ ସମାଧାନ ସମ୍ଭବପର ନୁହେଁ । ତେଣୁ ବେକନ୍ ଧାରଣା ଗଠନ ଓ ନିୟମ ପ୍ରଣୟନ ନିମିତ୍ତ ଦୃଷ୍ଟାନ୍ତ ଅବଲୋକନର ଆବଶ୍ୟକତା ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରୁଥିଲେ ।

ବେକନ୍‌ଙ୍କ ମତରେ ଭାଷାଗତ ଅନ୍ଧସଂସ୍କାର ଦ୍ୱିବିଧ ।

ପ୍ରଥମତଃ ଭାଷାରେ କେତେଗୁଡ଼ିଏ ଶବ୍ଦ ଅଛି, ଅଥଚ ସେମାନଙ୍କ ଦ୍ୱାରା ସୂଚିତ ବସ୍ତୁର ଅସ୍ତିତ୍ୱ ନାହିଁ, ଯଥା—ଭାଗ୍ୟ, ସର୍ବପ୍ରଥମ ଗତିବିଧାତା (୧୪) ଇତ୍ୟାଦି । ଏଗୁଡ଼ିକ ମିଥ୍ୟା ମତବାଦ ବା ଅସାର କଳ୍ପନା ପ୍ରସୂତ

(୧୪) Prime Mover.

ଅଳୀକ ବସ୍ତୁ । ତଥାପି ଏପ୍ରକାର ଶବ୍ଦଗୁଡ଼ିକରୁ ଭ୍ରାନ୍ତ ଧାରଣା ଜନ୍ମେ ଯେ ତତ୍ସୂଚିତ ବସ୍ତୁର କୌଣସି ନା କୌଣସି ଠାରେ ଅସ୍ତିତ୍ୱ ରହିଛି । ଦ୍ୱିତୀୟତଃ ଅନ୍ୟ କେତେଗୁଡ଼ିଏ ଶବ୍ଦ ଅଛି ଯାହା ସୁସ୍ପଷ୍ଟଭାବରେ କୌଣସି ଗୋଟିଏ ଗୋଟିଏ ପ୍ରକାର ବସ୍ତୁ-ଗୁଣ-କର୍ମାଦିର ସୂଚକ ନୁହେଁ । ତେଣୁ ସେମାନଙ୍କୁ ବିଭିନ୍ନ ଅର୍ଥରେ ବିଭିନ୍ନ କ୍ଷେତ୍ରରେ ପ୍ରୟୋଗ କରାଯାଇ ପାରେ । କିନ୍ତୁ ଏହି କାରଣରୁହିଁ ଏ ପ୍ରକାର ଶବ୍ଦର ପ୍ରୟୋଗ ଦ୍ୱାରା ଶବ୍ଦା ବିଭ୍ରାଟ ଓ ଅପଯୁକ୍ତିର ସୃଷ୍ଟି ହୁଏ । ବେକନ୍ 'ଆର୍ଦ୍ର' (୧୫) ଶବ୍ଦକୁ ଉଦାହରଣ ସ୍ୱରୂପ ଗ୍ରହଣ କରି ତାହା କିପରି ବିଭିନ୍ନ ଅର୍ଥରେ ବ୍ୟବହୃତ ହୁଏ ପ୍ରଦର୍ଶନ କରିଛନ୍ତି । ଏତଦ୍ବ୍ୟତୀତ ଅନ୍ୟ କେତେକ ବସ୍ତୁ, କର୍ମ ଓ ଗୁଣ-ସୂଚକ ନାମ କିପରି ବିକୃତ ଓ ଭ୍ରାନ୍ତ ଭାବରେ ବ୍ୟବହୃତ ହୁଏ, ତାହା

---

୧୫ । ବେକନ୍ ଲେଖିଥିଲେ ଯେ **humid** (ଆର୍ଦ୍ର) ଶବ୍ଦକୁ ନିମ୍ନଲିଖିତ ବିଭିନ୍ନ ଅର୍ଥରେ ବ୍ୟବହାର କରାଯାଏ :—

(୧) ଯାହା ଅନ୍ୟ ଏକ ବସ୍ତୁରେ ଅନାୟାସରେ ପରିବ୍ୟାପ୍ତ ହୁଏ ।

(୨) ଯାହା ସ୍ୱଭାବତଃ ଅନିର୍ଦ୍ଦିଷ୍ଟ ଏବଂ ଘନୀଭୂତ ହୋଇପାରେ ନାହିଁ ।

(୩) ଯାହା ପ୍ରତ୍ୟେକ ଦିଗରୁ ଆଶୁ ଅପସାରିତ ହୁଏ ।

(୪) ଯାହା ସହଜରେ ବିଭକ୍ତ ଓ ବିଚ୍ଛୁରିତ ହୁଏ ।

(୫) ଯାହା ସହଜରେ ଏକତ୍ରୀଭୂତ ଓ ଐକ୍ୟବଦ୍ଧ ହୁଏ ।

(୬) ଯାହା ଆଶୁ ପ୍ରବହମାନ ଓ ଗତିଶୀଳ ହୁଏ ।

(୭) ଯାହା ସହସା ଅନ୍ୟ ଏକ ବସ୍ତୁରେ ସଂଲଗ୍ନ ହୋଇ ରହେ ଓ ତାହାକୁ ଜଳସିକ୍ତ କରେ ।

(୮) ଯାହା ଅନାୟାସରେ ତରଳ ହୋଇଯାଏ ବା ଘନୀଭୂତ ଥିଲେ ତରଳୀକୃତ ହୁଏ ।

ତେଣୁ ଗୋଟିଏ ଅର୍ଥରେ ଅଗ୍ନି ହେଉଛି ଆର୍ଦ୍ର; ଅନ୍ୟ ଅର୍ଥରେ ବାୟୁ ଆର୍ଦ୍ର ନୁହେଁ; ଅନ୍ୟ ଏକ ଅର୍ଥରେ ସୂକ୍ଷ୍ମ ଧୂଳିକଣିକା ହେଉଛି ଆର୍ଦ୍ର । ପୁଣି ଆଉରି ଏକ ଅନ୍ୟ ଅର୍ଥରେ କାଚ ହେଉଛି ଆର୍ଦ୍ର ।

ମଧ୍ୟ ପ୍ରଦର୍ଶନ କରି ସ୍ପଷ୍ଟତଃ ସୂଚାଇ ଯାଇଛନ୍ତି ଯେ ଭାଷାଗତ ଅନ୍ଧସଂସ୍କାରରୁ ମୁକ୍ତ ନ ହେଲେ ଯଥାର୍ଥ ଜ୍ଞାନଲାଭ ସୁଦୂର-ପରାହତ ହେବା ଅବଶ୍ୟମ୍ଭାବୀ ।

## ରଙ୍ଗମଞ୍ଚଗତ ବା ପ୍ରଚଳିତ ପ୍ରଥାହେତୁକ ଅନ୍ଧସଂସ୍କାର

ବେକନ୍‌ଙ୍କ ମତରେ ଏ ପ୍ରକାର ଅନ୍ଧସଂସ୍କାର ଜାତିଗତ ବା ବ୍ୟକ୍ତିଗତ ଅନ୍ଧସଂସ୍କାର ଭଳି ସହଜାତ ନୁହେଁ କିମ୍ବା ଭାଷାଗତ ଅନ୍ଧ-ସଂସ୍କାର ଭଳି ଜ୍ଞାତାର ଅଜ୍ଞାତସାରରେ ତାହାର ଶକ୍ତିକୁ ପ୍ରଭାବିତ କରେ ବୋଲି କୁହାଯାଇ ନ ପାରେ । ଏ ପ୍ରକାର ଅନ୍ଧସଂସ୍କାର ଭ୍ରାନ୍ତ ଅଥଚ ବହୁ ପ୍ରଚଳିତ ଦର୍ଶନରୁ ତଥା ବିକୃତ ଅଥଚ ପ୍ରମାଣ ପଦ୍ଧତି ରୂପେ ସ୍ୱୀକୃତ ପ୍ରଣାଳୀ ଦ୍ୱାରା ସଂଚାରିତ ହୋଇଥାଏ ।

ରଙ୍ଗମଞ୍ଚରେ ପ୍ରଦର୍ଶିତ ନାଟକମାନଙ୍କ ଭଳି କେତେକ ଦର୍ଶନ ଆଶାତୀତ ଭାବେ ସୁସଂହତ ଓ ପରିମାର୍ଜିତ । ଐତିହାସିକ ସତ୍ୟ ଘଟଣାର ବର୍ଣ୍ଣନଠାରୁ ନାଟ୍ୟକାରଙ୍କ କଳ୍ପିତ ନାଟକ ଯେପରି ଅଧିକ ମନୋରମ କିନ୍ତୁ ଅବାସ୍ତବ, ସେହିପରି ପର୍ଯ୍ୟବେକ୍ଷଣଭିତ୍ତିକ ପ୍ରାକୃତିକ ଦର୍ଶନଠାରୁ କଳ୍ପନାପ୍ରଧାନ ଏହି ବିଧିବଦ୍ଧ ଦର୍ଶନଗୁଡ଼ିକ ଅଧିକ ଚିତ୍ତାକର୍ଷକ, କିନ୍ତୁ ଅମୂଳକ । ସାଧାରଣତଃ ଏହି ଦର୍ଶନଗୁଡ଼ିକ ହେଉଛି ଅଳ୍ପ କେତେକ ବସ୍ତୁରୁ ଅତ୍ୟଧିକ ତଥ୍ୟ ସଂଗ୍ରହଣ ଅଥବା ଅନେକ ବସ୍ତୁରୁ ଅତ୍ୟଳ୍ପ ତଥ୍ୟ ସଂଗ୍ରହଣର ପରିଣତି । ଉଭୟ କ୍ଷେତ୍ରରେ ଉପଯୁକ୍ତ ପରିମାଣର ପରୀକ୍ଷା-ନିରୀକ୍ଷାର ଯେ ଅଭାବ ଥାଏ ଏହା ସୁସ୍ପଷ୍ଟ । ବେକନ୍ ତାଙ୍କ ସମୟରେ ପ୍ରଚଳିତ ତିନୋଟି ଭ୍ରାନ୍ତ ଦର୍ଶନର ଉଲ୍ଲେଖ କରି ଅଛନ୍ତି ଏବଂ ସେଗୁଡ଼ିକ ରଙ୍ଗମଞ୍ଚ ବା ପ୍ରଚଳିତ ପ୍ରଥାହେତୁକ ଅନ୍ଧସଂସ୍କାରର ଉତ୍ସ ବୋଲି ମତ ପ୍ରଦାନ କରିଛନ୍ତି । ସେଗୁଡ଼ିକ ହେଉଛି ଯୁକ୍ତିର ଅପପ୍ରୟୋଗମୂଳକ (୧୬), ପ୍ରତ୍ୟକ୍ଷାନୁଭୂତି-ମୂଳକ (୧୭) ଓ ଅନ୍ଧବିଶ୍ୱାସମୂଳକ (୧୮) ଦର୍ଶନ ।

---

(୧୬) Sophistical
(୧୭) Empirical
(୧୮) Superstitious

ବୁଦ୍ଧିବାଦୀ ଦାର୍ଶନିକ(୯)ମାନେ କେତୋଟି ସାଧାରଣ ଦୃଷ୍ଟାନ୍ତର ଅନାୟାସଲବ୍ଧ ଅନୁଭୂତରେ ବୁଦ୍ଧିର ପ୍ରୟୋଗ କରି କଳ୍ପନା ସାହାଯ୍ୟରେ ଗୋଟିଏ ସର୍ବାଙ୍ଗ ଦର୍ଶନ ଉପସ୍ଥାପିତ କରନ୍ତି । ବେକନ୍‌ଙ୍କ ମତରେ ଆରିଷ୍ଟୋଟଲ୍‌ଙ୍କ ଦର୍ଶନ ଏପ୍ରକାର ପ୍ରବୃତ୍ତିର ଅପପ୍ରୟୋଗମୂଳକ ଦର୍ଶନର ସ୍ପଷ୍ଟ ନିଦର୍ଶନ । ଆରିଷ୍ଟୋଟଲ୍‌ଙ୍କ ଦର୍ଶନର ପ୍ରତ୍ୟେକ ବିଭାଗରେ ତାଙ୍କର ତର୍କଶାସ୍ତ୍ରର ଆଲେଖ୍ୟ ସୁସ୍ପଷ୍ଟ । ବସ୍ତୁବିଜ୍ଞାନ ହେଉ ବା ଜୀବବିଜ୍ଞାନ ହେଉ ବା ତତ୍ତ୍ୱବିଜ୍ଞାନ ହେଉ ପ୍ରତ୍ୟେକ କ୍ଷେତ୍ରରେ ପ୍ରଥମରୁ ଯେ ପୂର୍ବ ବଳରେ ସିଦ୍ଧାନ୍ତରେ ପହଞ୍ଚି ତହିଁରେ ତାହାକୁ ଅନୁଭୂତ ଦ୍ୱାରା ସମର୍ଥିତ କରାଇ ନେଇଛନ୍ତି । କିନ୍ତୁ ପ୍ରଥମରୁ ପ୍ରକୃତିର ଯଥାଯଥ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ କରି କେବଳ ସେହି ଜ୍ଞାନରୁହିଁ ସିଦ୍ଧାନ୍ତ ଗ୍ରହଣ କରିବା ହେଉଛି ଯଥାର୍ଥ ପ୍ରାକୃତିକ ଦର୍ଶନର ମୂଳମନ୍ତ୍ର ।

ଇନ୍ଦ୍ରିୟ-ପ୍ରତ୍ୟକ୍ଷବାଦୀ(୧୦) ଦାର୍ଶନିକମାନେ ଅନ୍ୟପକ୍ଷରେ ଅଳ୍ପ କେତେଗୋଟି ଆୟାସସାପେକ୍ଷ ସଯତ୍ନ ପରୀକ୍ଷଣରେ ନିଜର ସମସ୍ତ ଶକ୍ତି ବିନିଯୋଗ କରି କେବଳ ସେଥିରୁହିଁ ସ୍ୱପରିଦ୍ୱେଷିତ ସମସ୍ତ ଦାର୍ଶନିକ ତଥ୍ୟ ଯେନ ତେନ ପ୍ରକାରେଣ ଉତ୍ପନ୍ନ ବୋଲି ପ୍ରଦର୍ଶନ କରନ୍ତି । ତେଣୁ ବୁଦ୍ଧିବାଦୀ ଦାର୍ଶନିକ ମାନଙ୍କର ସିଦ୍ଧାନ୍ତ ଅପେକ୍ଷା ଏମାନଙ୍କର ସିଦ୍ଧାନ୍ତ ଆହୁରି ବିକଟ ଓ କିମ୍ଭୂତ କିମାକାର ହୋଇଯାଏ । କେତେକ ନିର୍ଦ୍ଦିଷ୍ଟ ବସ୍ତୁ ବିଷୟକ ଜ୍ଞାନକୁ ସମସ୍ତ ବସ୍ତୁବିଷୟକ ଦାର୍ଶନିକ ସତ୍ୟରୂପେ ଉପସ୍ଥାପିତ କରିବାଦ୍ୱାରା ଏ ପ୍ରକାର ଦାର୍ଶନିକମାନେ ଯେଉଁ ତଥ୍ୟ ପରିବେଷଣ କରନ୍ତି ତାହା ସାଧାରଣ ଲୋକଙ୍କ ପକ୍ଷରେ ମଧ୍ୟ ଅଳୀକ, ଭ୍ରାନ୍ତ ଓ ଅବିଶ୍ୱାସ୍ୟ ବୋଲି ମନେ ହେବା କଥା । ତଥାପି ଏହା ପରୀକ୍ଷଣଭିତ୍ତିକ ବୋଲି ପ୍ରଦର୍ଶିତ ହେବା ଦ୍ୱାରା ସମୂଳେ ପରିତ୍ୟକ୍ତ ହେବା ପରିବର୍ତ୍ତେ ଅନ୍ଧସଂସ୍କାର ସୃଷ୍ଟି କରିବାରେ ସହାୟକ ହୋଇଥାଏ । ଦାର୍ଶନିକ ତଥ୍ୟ ପରୀକ୍ଷଣଭିତ୍ତିକ ହେବା ବାଞ୍ଛନୀୟ, କିନ୍ତୁ ଅଳ୍ପ କେତୋଟି ପରୀକ୍ଷଣର ଫଳାଫଳରୁ ସହସା ଅତିବ୍ୟାପକ

(୯) Rationalists

(୧୦) Empiricists

ସାର୍ବିକ ସତ୍ୟରେ ଉପନୀତ ହେବା ପ୍ରଣାଳୀ ସର୍ବଥା ପରିବର୍ଜନୀୟ । ବେକନ୍‌ଙ୍କ ମତରେ ତାଙ୍କ ସମୟରେ ପ୍ରଚଳିତ ରସାୟନ ଶାସ୍ତ୍ରବିଦ୍ ମାନଙ୍କର ଏବଂ ଗିଲ୍‌ବର୍ଟଙ୍କ ଦର୍ଶନ ହେଉଛି ଏପ୍ରକାର ପ୍ରତ୍ୟକ୍ଷାନୁଭୂତିମୂଳକ ଭ୍ରାନ୍ତ ଦର୍ଶନର ଉଦାହରଣ ।

ବେକନ୍ ଅନ୍ଧସଂସ୍କାର-ସୃଷ୍ଟିକାରୀ ଏହି ଉଭୟବିଧ ଦର୍ଶନ ଅପେକ୍ଷା ଅନ୍ଧବିଶ୍ୱାସମୂଳକ ଭ୍ରାନ୍ତ ଦର୍ଶନର ପ୍ରଭାବ ଅଧିକ କ୍ଷତିକାରକ ଓ ଅଧିକ ବ୍ୟାପକ ବୋଲି ମନେ କରୁଥିଲେ । କାରଣ ଉପର୍ଯ୍ୟୁକ୍ତ ଉଭୟ ପ୍ରକାର ଦର୍ଶନ ମନୁଷ୍ୟର ଧୀଶକ୍ତିକୁ ଯୁକ୍ତିର ଅପପ୍ରୟୋଗ ଦ୍ୱାରା ଓ ସାକ୍ଷ୍ୟପ୍ରମାଣର ଦ୍ୱାହି ଦେଇ ବିପଥଗାମୀ କରାଏ; କିନ୍ତୁ ତୃତୀୟ ପ୍ରକାର ଦର୍ଶନ ଧର୍ମବିଶ୍ୱାସ, ଅନ୍ଧବିଶ୍ୱାସ, କଳ୍ପନା ଓ କଳାତ୍ମକ ଅଭିବ୍ୟକ୍ତିର ସମ୍ମିଶ୍ରଣ ଦ୍ୱାରା ମନୁଷ୍ୟର ଚିର-ଅଭିଳଷିତ ପ୍ରିୟ ଓ ଶ୍ରେୟ ପ୍ରଦାୟକ ବୋଲି ଧାରଣା ସୃଷ୍ଟି କରେ ଓ ତାଦ୍ୱାରା ଧୀଶକ୍ତିକୁ ସମ୍ପୂର୍ଣ୍ଣଭାବେ ଆଘୃତ କରି ନିଏ । ବେକନ୍‌ଙ୍କ ମତରେ ପାଇଥାଗୋରସ୍ (୨୯) ଓ ପ୍ଳେଟୋଙ୍କ ଦର୍ଶନ ଏହି ତୃତୀୟଶ୍ରେଣୀ-ଭୁକ୍ତ । ମନୁଷ୍ୟର ଧୀଶକ୍ତିକୁ ଏ ପ୍ରକାର ଦର୍ଶନରେ ଏପରି ଏକ ଉଚ୍ଚସ୍ଥାନ ଦିଆଯାଏ ଯେ ତହିଁରୁ ବିଚ୍ୟୁତିର ଭୀତି ଧୀଶକ୍ତିକୁ ନିଃସ୍ପନ୍ଦ କରି ଦିଏ । ବେକନ୍ ଏ ପ୍ରକାର ଦର୍ଶନ ତଥା ତଜ୍ଜନିତ ଅନ୍ଧସଂସ୍କାରର କବଳରୁ ଧୀଶକ୍ତିକୁ ମୁକ୍ତ ରଖିବା ସତ୍ୟାନୁସନ୍ଧିତ୍ସୁ ବ୍ୟକ୍ତିର ସର୍ବପ୍ରଥମ କର୍ତ୍ତବ୍ୟବୋଲି ମତ ପ୍ରଦାନ କରିଛନ୍ତି । ବିଶ୍ୱାସ ଓ ବିଜ୍ଞାନର ପରସ୍ପର ସ୍ୱତନ୍ତ୍ର । ଉଭୟର ଅବୈଧ ସମ୍ମିଶ୍ରଣ କେବଳ ଭ୍ରାନ୍ତିମୂଳକ ନୁହେଁ, ବିପଜ୍ଜନକ ।

ଏତଦ୍‌ବ୍ୟତୀତ ବେକନ୍‌ଙ୍କ ମତରେ ପ୍ରାକୃତିକ ଦର୍ଶନର ବିଷୟବସ୍ତୁ ନିର୍ବାଚନରେ ମଧ୍ୟ ଅନେକ ପ୍ରକାର ଭ୍ରାନ୍ତ ଧାରଣା ରହି ଯାଇଥିବାରୁ କେତେକ ପ୍ରଚଳିତ ପ୍ରଥା-ହେତୁକ ଅନ୍ଧସଂସ୍କାରର ସୂତ୍ରପାତ ହୋଇଥାଏ । ଯାନ୍ତ୍ରିକ ଶିଳ୍ପରେ ଏକତ୍ରୀକରଣ ଓ ପୃଥକ୍‌କରଣ ପ୍ରକ୍ରିୟା ଦ୍ୱାରା ବସ୍ତୁବିନ୍ୟାସ

(୨୯) Pythagoras (570-500)

ଘଟୁଥିବାର ଲକ୍ଷ୍ୟ କରି ସମଗ୍ର ବିଶ୍ୱପ୍ରକୃତିରେ ମଧ୍ୟ ଏହି ପ୍ରକାର କୌଣସି ପ୍ରକ୍ରିୟା କାର୍ଯ୍ୟକାରୀ ହେଉଥିବ ବୋଲି ଧାରଣା ଜନ୍ମେ । ପୁଣି ପ୍ରକୃତିରେ ବିଭିନ୍ନ ପ୍ରକାର ବସ୍ତୁ, ଧାତବ ଦ୍ରବ୍ୟ, ଉଦ୍ଭିଦ ଓ ଜୀବ ସୃଷ୍ଟି ହେଉଥିବାର ଲକ୍ଷ୍ୟ କରି ପ୍ରକୃତି କେତୋଟି ମୁଖ୍ୟ ପ୍ରକାର ବସ୍ତୁର ସୃଜନ ନିମିତ୍ତ ପ୍ରୟାସୀ ବୋଲି ଧାରଣା ଜାତ ହୁଏ । ଏତଦ୍ଦ୍ୱାରା ଦର୍ଶନରେ ପ୍ରକୃତିର ଆଦ୍ୟପ୍ରାନ୍ତ ଆବିଷ୍କାର କରିବାର ନିଷ୍ଫଳ ପ୍ରୟାସହିଁ ସାର ହୁଏ । ବେକନ୍‌ଙ୍କ ମତରେ ଏ ସବୁ ବିଷୟରେ ଶକ୍ତି ଓ ସମୟ ଅପଚୟ ନ କରି ପ୍ରକୃତି କି କି ପ୍ରଣାଳୀରେ କାର୍ଯ୍ୟ କରେ ତାହାରହିଁ ଅନୁଧ୍ୟାନ କରିବା ଆବଶ୍ୟକ । ପ୍ରାକୃତିକ ନିୟମ-ସମ୍ବନ୍ଧୀୟ ଜ୍ଞାନରେହିଁ ମାନବ ସମାଜର କଲ୍ୟାଣ ନିହିତ ।

ବେକନ୍‌ଙ୍କ ମତରେ କୌଣସି ଗୋଟିଏ ଦର୍ଶନର ସିଦ୍ଧାନ୍ତକୁ ଅପରିବର୍ତ୍ତନୀୟ ସତ୍ୟ ବୋଲି ଗ୍ରହଣ କରିବା ଯେପରି ଏକ ଅନ୍ଧସଂସ୍କାର, ସମସ୍ତ ପ୍ରକାର ଦର୍ଶନର ସିଦ୍ଧାନ୍ତ ସ୍ୱଭାବତଃ ଭ୍ରାନ୍ତ, ଅର୍ଥାତ୍ ଯଥାର୍ଥ ଜ୍ଞାନଲାଭ ମାନବ କ୍ଷମତାର ବହିର୍ଭୂତ ବୋଲି ମନେ କରିବା ମଧ୍ୟ ସେହିପରି ଏକ ଅନ୍ଧସଂସ୍କାର । ମନୁଷ୍ୟର ଜ୍ଞାନେନ୍ଦ୍ରିୟ ଓ ଧୀଶକ୍ତିର ସାମର୍ଥ୍ୟ ସୀମିତ; ତଥାପି ଯଥାର୍ଥ ଜ୍ଞାନଲାଭ ନିମିତ୍ତ ଏଗୁଡ଼ିକୁ ଅନୁପଯୁକ୍ତ ଉପକରଣ ବୋଲି ନ ବିଚାରି ଏମାନଙ୍କର ଶକ୍ତିବର୍ଦ୍ଧନ ନିମିତ୍ତ ଯତ୍ନବାନ୍ ହେବା ବିଧେୟ ।

ଅନ୍ଧସଂସ୍କାର ଗୁଡ଼ିକର ନିରାକରଣ ହେଉଛି ଯଥାର୍ଥ ଜ୍ଞାନାହରଣର ପ୍ରାଥମିକ ପ୍ରସ୍ତୁତି । ଏହାଦ୍ୱାରା କି କି ପ୍ରକାର ତଥାକଥିତ ଜ୍ଞାନ ପରିହାର୍ଯ୍ୟ ତାହାର ସୂଚନା ମିଳେ । ଯେଉଁସବୁ କୁପ୍ରଭାବଦ୍ୱାରା ମନୁଷ୍ୟର ଧୀଶକ୍ତି ଯଥାର୍ଥ ଜ୍ଞାନ ଆହରଣ କରିବାରେ ସମର୍ଥ ହୁଏ ନାହିଁ, ସେଗୁଡ଼ିକର ଅପସାରଣ ବେକନ୍‌ଙ୍କ ନୂତନ ପଦ୍ଧତିର ନେତିମୂଳକ ଅଂଶ । ଏହା ସହିତ ଯାହା କରଣୀୟ ତାହା ବେକନ୍ ତାଙ୍କର 'ନୂତନ ସାଧନ' ଗ୍ରନ୍ଥର ଦ୍ୱିତୀୟ-ଭାଗରେ ଉପସ୍ଥାପିତ କରିଥିଲେ ।

## ଆରୋହ ପଦ୍ଧତି

ବେକନ୍‌ଙ୍କ ମତରେ କୃତ୍ରିମ ଉପାୟରେ ଗୋଟିଏ ବସ୍ତୁରେ ତାହାର ସ୍ୱଭାବସିଦ୍ଧ ପ୍ରକୃତି ପରିବର୍ତ୍ତେ କୌଣସି ନୂତନ ପ୍ରକୃତି ସଜାତ କରିପାରିବା ମାନବୀୟ ଶକ୍ତିର ଉଦ୍ଦେଶ୍ୟ ଓ କାର୍ଯ୍ୟ । କୌଣସି ବସ୍ତୁପ୍ରକୃତିକୁ ପରିଚାଳିତ କରୁଥିବା ନିୟମର ଆବିଷ୍କାର କରିବା ଅଥବା ଅନ୍ୟାନ୍ୟ ବସ୍ତୁଠାରୁ ତାହାର ଯଥାର୍ଥ ସ୍ୱାତନ୍ତ୍ର୍ୟ ନିର୍ଣ୍ଣୟ କରିବା ଅଥବା ତାର ସୃଷ୍ଟିର ଉତ୍ସ-ନିର୍ଣ୍ଣୟ କରିବା ହେଉଛି ମାନବୀୟ ଜ୍ଞାନର ଉଦ୍ଦେଶ୍ୟ ଓ କାର୍ଯ୍ୟ । ମୂର୍ତ୍ତିବସ୍ତୁର ଆକାରଗତ ପରିବର୍ତ୍ତନ କରିବା, ଉପାଦାନ ଓ ନିମିତ୍ତ କାରଣରୁ ବସ୍ତୁ ସୃଷ୍ଟି ହେବାର ଅନ୍ତର୍ନିହିତ ପ୍ରଣାଳୀର (୨୨) ଆବିଷ୍କାର କରିବା ଏବଂ ସ୍ଥିତିବାନ୍ ବସ୍ତୁର ଅନ୍ତର୍ନିହିତ ରୂପରେଖ (୨୩)ର ଜ୍ଞାନାର୍ଜନ କରିବା ମଧ୍ୟ ଉପର୍ଯ୍ୟୁକ୍ତ ଉଭୟ ପ୍ରକାର ଉଦ୍ଦେଶ୍ୟ ଓ କାର୍ଯ୍ୟର ଅନ୍ତର୍ଗତ ।

ବେକନ୍‌ଙ୍କ ମତରେ ଯଥାର୍ଥ ଜ୍ଞାନ ହେଉଛି କାର୍ଯ୍ୟକାରଣ-ସମ୍ବନ୍ଧ-ଜନିତ ଜ୍ଞାନ । କାରଣବର୍ଗକୁ ଉପାଦାନ, ନିମିତ୍ତ, ଆକୃତିକ ଓ ପରିଣାମ (୨୪) ଭେଦରେ ବିଭାଗ କରିବା ମଧ୍ୟ ଯଥାର୍ଥ । କିନ୍ତୁ ମନୁଷ୍ୟର ଉଦ୍ଦେଶ୍ୟ-ମୂଳକ କାର୍ଯ୍ୟସମ୍ବନ୍ଧୀୟ ବିଷୟ ବ୍ୟତୀତ ଅନ୍ୟତ୍ର ପରିଣାମ କାରଣର ଅନୁସନ୍ଧାନ ବୈଜ୍ଞାନିକ ପ୍ରଗତିର ପରିପନ୍ଥୀ ହୋଇଥାଏ । ଅବଶ୍ୟ ତାଙ୍କ ସମୟରେ ଉପାଦାନ ଓ ନିମିତ୍ତ କାରଣର ବିଚାର ଯେପରି ଭାବରେ କରାଯାଉଥିଲା ସେଥିରେ ମଧ୍ୟ ସେ ସନ୍ତୁଷ୍ଟ ନଥିଲେ ।

ପ୍ରକୃତିକୁ ସ୍ଥୂଳ ଦୃଷ୍ଟିରେ ଦେଖିଲେ ଏଥିରେ ପରସ୍ପରଠାରୁ ପୃଥକ୍ ଅସଂଖ୍ୟ ବସ୍ତୁ ନିଜ ନିଜର ସ୍ୱଭାବଗତ ନିୟମ ଦ୍ୱାରା ପରିଚାଳିତ ହୋଇ କାର୍ଯ୍ୟ କରୁଥିବା ଜଣାଯିବ । କିନ୍ତୁ ଏହି ବସ୍ତୁବର୍ଗ ଯେଉଁ ନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ପରିଚାଳିତ ହୋଇ କାର୍ଯ୍ୟୋତ୍ପାଦନ କରନ୍ତି ତାହାର ହିଁ ଅନୁସନ୍ଧାନ, ଆବିଷ୍କାର ଓ ବ୍ୟାଖ୍ୟା କରିବା ହେଉଛି ପ୍ରାକୃତିକ ଦର୍ଶନର ପ୍ରଧାନ କାର୍ଯ୍ୟ ।

---

(୨୨) Latent Process

(୨୩) Latent Configuration

(୨୪) material, efficient, formal and final

ଏହି ଅନ୍ତର୍ନିହିତ ନିୟମକୁହିଁ ବେକନ୍ 'ଫର୍ମ' (୨୫) ଆଖ୍ୟା ଦେଇଥିଲେ । ବେକନ୍‌ଙ୍କ ଦ୍ୱାରା ବ୍ୟବହୃତ 'ଫର୍ମ' ଶବ୍ଦର ଅର୍ଥ, ଗ୍ରୀକ୍ ଦାର୍ଶନିକମାନଙ୍କ ଦ୍ୱାରା ବ୍ୟବହୃତ 'ଫର୍ମ' ଶବ୍ଦର ଅର୍ଥ ସହିତ ସମାନ ନୁହେଁ । ଏହା ଆଦର୍ଶ, ସମ୍ଭାବନା ବା ଆକାର ଅର୍ଥରେ ବ୍ୟବହୃତ ହୋଇନାହିଁ । ବେକନ୍‌ଙ୍କ ସମୟରେ ଏହା ନିୟମ ଅର୍ଥରେହିଁ ବ୍ୟବହୃତ ହେଉଥିଲା । ତାଙ୍କର ପୂର୍ବବର୍ତ୍ତୀ ଦାର୍ଶନିକ ଟେଲେସିଅସ୍ (୨୬) ଉଷ୍ଣତା ଓ ଶୀତଳତାକୁ ପ୍ରକୃତିର ଦୁଇଟି ସକ୍ରିୟ ଫର୍ମ ବୋଲି କହିଥିଲେ । ବେକନ୍‌ଙ୍କ ଅର୍ଥରେ ଉଷ୍ଣତାର ଫର୍ମ ହେଉଛି ଉଷ୍ଣତାର ନିର୍ଣ୍ଣାୟକ ଓ ନିୟନ୍ତ୍ରକ ନିୟମ; ଯେଉଁ ନିୟମର ଅନୁବର୍ତ୍ତୀ ହୋଇ ଉଷ୍ଣତା କାର୍ଯ୍ୟକରେ ତାହାହିଁ ତାହାର ଫର୍ମ ।

ବେକନ୍ କହିଥିଲେ ଯେ କେତେକ ନିର୍ଦ୍ଦିଷ୍ଟ ପ୍ରାକୃତିକ ଘଟଣାର କାରଣ ଜାଣିବା ଦ୍ୱାରା ମନୁଷ୍ୟର ଜ୍ଞାନ ପୂର୍ଣ୍ଣାଙ୍ଗ ହୁଏନାହିଁ । ସେହିପରି କେତୋଟି ନିର୍ଦ୍ଦିଷ୍ଟ ବସ୍ତୁର ପ୍ରକୃତି ପରିବର୍ତ୍ତନର ସାମର୍ଥ୍ୟ ଅର୍ଜନ କରିବା ଦ୍ୱାରା ମନୁଷ୍ୟର ଶକ୍ତି ପୂର୍ଣ୍ଣାଙ୍ଗ ହୁଏନାହିଁ । ଜଣକର ଜ୍ଞାନ କେବଳ ଉପାଦାନ ଓ ନିମିତ୍ତ କାରଣରେ ସୀମିତ ରହିଲେ, ସେ ଅଳ୍ପ କେତୋଟି ସମାନ ଧରଣର ବିଷୟରେ କେତୋଟି ନୂତନ ଆବିଷ୍କାର କରିପାରେ । କିନ୍ତୁ ଏହାଦ୍ୱାରା ସେ ବସ୍ତୁପ୍ରକୃତିର ଗୁହ୍ୟତମ ରହସ୍ୟକୁ ସ୍ପର୍ଶ ସୁଦ୍ଧା କରି ନ ଥାଏ । କିନ୍ତୁ ଯେଉଁ ବ୍ୟକ୍ତି ଫର୍ମ ସହିତ ସୁପରିଚିତ, ଯେ ପ୍ରକୃତିର ଅନ୍ତର୍ନିହିତ ନିୟମର ଜ୍ଞାନାର୍ଜନ କରି ପାରିଛି, ସେ ହିଁ କେବଳ ପ୍ରକୃତିର ଗୁହ୍ୟତମ ରହସ୍ୟ ଭେଦ କରି ପାରିଛି, ସେ ହିଁ କେବଳ ବିଭିନ୍ନ ଧରଣର ବସ୍ତୁସମ୍ବନ୍ଧୀୟ ଅକଳ୍ପନୀୟ ନୂତନ ତଥ୍ୟ ପରିବେଷଣ କରିବା ନିମିତ୍ତ ସମର୍ଥ । ତେଣୁ ଏ ପ୍ରକାର ପ୍ରାକୃତିକ ନିୟମର ଆବିଷ୍କାର ଦ୍ୱାରାହିଁ ଚିନ୍ତା ରାଜ୍ୟରେ ସତ୍ୟତା ଓ କର୍ମକ୍ଷେତ୍ରରେ ସ୍ୱାଚ୍ଛନ୍ଦ୍ୟ ଲାଭ କରାଯାଇପାରେ ।

---

(୨୫) **Form**

(୨୬) **Telesius (1508-1588)**

ମନୁଷ୍ୟର କର୍ମ ଓ ଜ୍ଞାନ, ଶକ୍ତି ଓ ଚିନ୍ତନ ପରସ୍ପରାପେକ୍ଷ । ଚିନ୍ତନକୁ କଳ୍ପନାପର୍ଯ୍ୟବସିତାରୁ ରକ୍ଷା କରିବା ନିମିତ୍ତ ବିଜ୍ଞାନ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ-ମୂଳକ ହେବା ବିଧେୟ; ଚିନ୍ତନ କର୍ମଦ୍ୱାରା ନିୟନ୍ତ୍ରିତ ହେବା ଉଚିତ । ତେଣୁ ପ୍ରଥମେ କି ପ୍ରକାର କର୍ମ ସମ୍ପାଦନ କରିବାକୁ ଜଣେ ଚାହେଁ ତାହା ସ୍ଥିର କରିପାରି, ତା ପରେ ସେଥି ନିମିତ୍ତ କି ପ୍ରକାର ଜ୍ଞାନର ଆବଶ୍ୟକତା ରହିଛି ତାହାର ବିଚାର କରାଯିବା ଆବଶ୍ୟକ । ଜ୍ଞାନ ନିଃସନ୍ଦିଗ୍ଧ ତଥା ଫଳପ୍ରଦ ହେବା ଉଚିତ ଓ ସାଧନ ସୁଲଭ ତଥା ସୁକର ହେବା ଉଚିତ । ବେକନ୍‌ଙ୍କ ମତରେ କୌଣସି ବସ୍ତୁପ୍ରକୃତିର ଫର୍ମ ବା ନିର୍ଣ୍ଣାୟକ ଓ ନିୟନ୍ତ୍ରକ ନିୟମ ଆବିଷ୍କୃତ ହେଲେ, ସେହି ବସ୍ତୁପ୍ରକୃତିସମ୍ବନ୍ଧୀୟ ସମସ୍ତ କର୍ମ ଅଭ୍ରାନ୍ତଭାବେ ସମ୍ପାଦନ କରାଯାଇପାରେ; କାରଣ ଫର୍ମର ଉପସ୍ଥିତି ଓ ଅନୁପସ୍ଥିତି ସର୍ବଦା ଓ ସର୍ବଦା ବସ୍ତୁପ୍ରକୃତିର ସୃଷ୍ଟି ଓ ବିନାଶ କରିଥାଏ ।

ବେକନ୍ ବସ୍ତୁର ରୂପାନ୍ତରୀକରଣ ଦ୍ୱିବିଧଭାବେ ସାଧିତ ହୋଇପାରେ ବୋଲି ମନେ କରୁଥିଲେ । ପ୍ରଥମତଃ ଯେ କୌଣସି ବସ୍ତୁକୁ ବିଶ୍ଳେଷଣ କରି ଦେଖିଲେ ଜଣାଯିବ ଯେ ତାହା କେତେକ ନିର୍ଦ୍ଦିଷ୍ଟ ପ୍ରକୃତିର ଏକତ୍ର ସଂଯୋଗର ପରିଣତି ମାତ୍ର । ଯେଉଁ ପ୍ରକୃତିଗୁଡ଼ିକର ସମନ୍ୱୟ ଘଟି ପ୍ରାକୃତିକ ପ୍ରଣାଳୀରେ ସ୍ୱର୍ଣ୍ଣର ସୃଷ୍ଟି ସମ୍ଭବପର ହେଉଛି ତାହାକୁ ଅନୁଧ୍ୟାନ କରି କୃତ୍ରିମ ପ୍ରଣାଳୀରେ ମଧ୍ୟ ସେହି ପ୍ରକୃତିଗୁଡ଼ିକର ସମନ୍ୱୟ ଘଟାଇ ପାରିଲେ ଗବେଷଣାଗାରରେ ଯେ ସ୍ୱର୍ଣ୍ଣ ସୃଷ୍ଟି ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । ଏହା ବସ୍ତୁରେ ସମନ୍ୱିତ ପ୍ରକୃତିଗୁଡ଼ିକର ଫର୍ମର ଜ୍ଞାନ ଉପରେ ନିର୍ଭର କରେ ଦ୍ୱିତୀୟତଃ ବସ୍ତୁର ପ୍ରକୃତି ବିଶ୍ଳେଷଣ ନ କରି ମଧ୍ୟ ତାହାର ସୃଷ୍ଟିରହସ୍ୟ ଉଦ୍‌ଘାଟନ କରିବା ଦ୍ୱାରା ଅର୍ଥାତ୍ ତାହା କପରି ପରିସ୍ଥିତିରେ ସୂତ୍ରପାତ ହୋଇ କେଉଁ ପ୍ରଣାଳୀରେ ଗତିକରି ପରିଶେଷରେ କିପରିଭାବରେ ତାହାର ଅନ୍ତିମ ଅବସ୍ଥା ପ୍ରାପ୍ତ ହୁଏ, ତାହାକୁ ଅନୁଧ୍ୟାନ କରିବାଦ୍ୱାରା କୃତ୍ରିମ ଉପାୟରେ ସେହି ପରିସ୍ଥିତିର ସୃଷ୍ଟି ଓ ସେହି ପ୍ରଣାଳୀରେ ଗତି ବିଧାନ କରାଇ ଉଦ୍ଦିଷ୍ଟ ବସ୍ତୁର ସୃଷ୍ଟି କରାଯାଇ ପାରେ । ଏହି ଦ୍ୱିତୀୟ ପ୍ରକାର ଅନୁସନ୍ଧାନ କେବଳ ବସ୍ତୁର ସୃଷ୍ଟି

କ୍ଷେତ୍ରରେ ସୀମିତ ନ ରହି ପ୍ରକୃତିର ଅନ୍ୟାନ୍ୟ କାର୍ଯ୍ୟକଳାପକୁ ମଧ୍ୟ ସଂପ୍ରସାରିତ ହୋଇପାରେ । ଖାଦ୍ୟର ପରିପାକ କ୍ରିୟା, ସ୍ୱେଚ୍ଛାକୃତ ଗତିବିଧାନ କ୍ରିୟା, ଭାଷାରେ ଭାବନାର ଅଭିବ୍ୟକ୍ତି କ୍ରିୟା ଇତ୍ୟାଦିର ଅନୁଧ୍ୟାନ କରିବା ଦ୍ୱାରା ମନୁଷ୍ୟ କର୍ମାଭିମୁଖୀ ଜ୍ଞାନ ସଂଗ୍ରହ କରିପାରେ । ଏ ପ୍ରକାର ବସ୍ତୁର ରୂପାନ୍ତରୀକରଣ ତାହାର (ବସ୍ତୁର) ଅନ୍ତର୍ନିହିତ ପ୍ରକୃତି ଓ ପ୍ରଣାଳୀର ଜ୍ଞାନ ଉପରେ ନିର୍ଭରଶୀଳ ।

ବେକନ୍ ତାଙ୍କ ବର୍ଣ୍ଣିତ ବସ୍ତୁପ୍ରକୃତିର ଅନ୍ତର୍ନିହିତ ପ୍ରଣାଳୀର ଆବିଷ୍କାର ଏବଂ ତାହାର ଅନ୍ତର୍ନିହିତ ରୂପରେଖ ନିର୍ଣ୍ଣୟ ଏହି ଉଭୟବିଧ ଅନୁସନ୍ଧାନ ତାଙ୍କ ସମସ୍ତର ବୈଜ୍ଞାନିକମାନଙ୍କ ଦ୍ୱାରା ଅନୁସୃତ ବୈଜ୍ଞାନିକ ଅନୁସନ୍ଧାନ ଠାରୁ ଭିନ୍ନ ବୋଲି ଦାବୀ କରୁଥିଲେ । ତାଙ୍କ ବର୍ଣ୍ଣିତ ଅନ୍ତର୍ନିହିତ ପ୍ରଣାଳୀ କେତୋଟି ଦୃଷ୍ଟିପଥାରୂଢ଼ ଆନୁକ୍ରମିକ ସୋପାନର ସଂହତି ନୁହେଁ; ଏହା ଗୋଟିଏ ଅବିଚ୍ଛିନ୍ନ ଧାରାବାହିକ ପ୍ରକ୍ରିୟା ଏବଂ ଏହାର ଅନେକାଂଶ ଅଦୃଶ୍ୟ । ଏହାର ଅଦୃଶ୍ୟ ଅଂଶଗୁଡ଼ିକୁ ଉନ୍ନତ ଧରଣର ସମ୍ବାଦ ତଥା ଚିନ୍ତନଦ୍ୱାରା ସ୍ପଷ୍ଟ କରାଯିବା ଆବଶ୍ୟକ । ଗଭୀର ଅଭିନିବେଶ ବିନା ଏହି କାର୍ଯ୍ୟ ସଫଳତା ସହ ସମ୍ପାଦିତ ହେବାର ସମ୍ଭାବନା ନାହିଁ । ସେହିପରି ବସ୍ତୁର ଅନ୍ତର୍ନିହିତ ରୂପରେଖ ବିଷୟରେ ସମ୍ୟକ୍ ଜ୍ଞାନ ଅର୍ଜନ କରିବା ମଧ୍ୟ ଅତ୍ୟନ୍ତ ଆୟାସସାଧ୍ୟ । ତାଙ୍କ ମତରେ ତାଙ୍କ ସମସ୍ତର ବୈଜ୍ଞାନିକମାନେ ପ୍ରକୃତିରାଣୀଙ୍କ ଅଟ୍ଟାଳିକାର କେବଳ ବହିର୍ଦେଶରେ କାଳାତିପାତ କରିବାରେ ଅଭ୍ୟସ୍ତ । କିନ୍ତୁ ତାଙ୍କର ଅନ୍ତରତମ ପ୍ରକୋଷ୍ଠରେ ପ୍ରବେଶ କରିବାର ପଥ ପରିଷ୍କାର କରି ନ ପାରିଲେ କୌଣସି ପ୍ରକାର ବସ୍ତୁଧ୍ୱଂସକର ଆବିଷ୍କାର ସମ୍ଭବପର ନୁହେଁ ।

କେତେକ ବସ୍ତୁର ସର୍ବାଙ୍ଗ ସମଧର୍ମୀ, କେତେକ ବସ୍ତୁର ବିଭିନ୍ନ ଅଙ୍ଗ ବିଭିନ୍ନ ଧର୍ମବିଶିଷ୍ଟ; କେତେକ ବସ୍ତୁର ଉପାଦାନ ମୌଳିକ, କେତେକ ବସ୍ତୁର ଉପାଦାନ ଯୌଗିକ; କେତେକ ବସ୍ତୁ ସଜୀବ, କେତେକ ବସ୍ତୁ ନିର୍ଜୀବ । ତେଣୁ ସମସ୍ତ ପ୍ରକାର ବସ୍ତୁର ରୂପରେଖ ନିର୍ଣ୍ଣୟ କରିବା ନିମିତ୍ତ

ଅଗ୍ନି ତଥା ଉତ୍ତାପ ସାହାଯ୍ୟରେ ରାସାୟନିକ ବିଶ୍ଳେଷଣ କରିବା ସମୁଚିତ ଓ ସମ୍ଭବପର ହୋଇ ନ ପାରେ । ଏଥି ନିମିତ୍ତ ପରୀକ୍ଷଣ ସାହାଯ୍ୟରେ ମନନ ଓ ଯଥାର୍ଥ ଆରୋହ ପଦ୍ଧତିର ପ୍ରୟୋଗ ଆବଶ୍ୟକ । ତେଣୁ ବସ୍ତୁ ମାନଙ୍କର ଉପାଦାନ ଗୁଡ଼ିକର ସଂସ୍ଥିତି ଓ ସଂଯୋଗ ବିଷୟକ ଜ୍ଞାନ ଲାଭ ପାଇଁ ଅଗ୍ନି ଦେବତାଙ୍କ ନିକଟକୁ ଯିବା ପରିବର୍ତ୍ତେ ସରସ୍ୱତୀଙ୍କ ନିକଟକୁ ଯିବାକୁ ପଡ଼ିବ ବୋଲି ବେକନ୍ ମନ୍ତବ୍ୟ ପ୍ରକାଶ କରିଥିଲେ ।

ବେକନ୍ଙ୍କ ମତରେ ବସ୍ତୁର ଅନ୍ତିମ ଉପାଦାନ ପରମାଣୁ ହୋଇ ନ ପାରେ; କାରଣ ଏହା ଶୂନ୍ୟସ୍ଥଳର ସ୍ଥିତି ଓ ପରମାଣୁର ଅପରିବର୍ତ୍ତ-ନୀୟତା ସ୍ୱୀକାର କରେ । କିନ୍ତୁ ବେକନ୍ଙ୍କ ମତରେ ଏହି ଉଭୟ ଧାରଣା ଭ୍ରାନ୍ତ ଓ କଳ୍ପନାପ୍ରସୂତ । ତାଙ୍କ ମତରେ କୌଣସି କାଳନିକ ବସ୍ତୁର ସ୍ଥିତିସମ୍ବନ୍ଧୀୟ ପ୍ରକଳ୍ପ ଉପରେ ନିର୍ଭର ନ କରି ଆମ୍ଭମାନଙ୍କୁ ଯୌଗିକ ବସ୍ତୁର ସ୍ଥିତିଶୀଳ ମୌଳିକ ଉପାଦାନର ଜ୍ଞାନ ଅର୍ଜନ କରିବାକୁ ପଡ଼ିବ । ଏହା ପ୍ରଥମତଃ ଯେତେ ଆୟାସସାଧ୍ୟ ମନେ ହେଉଥିଲେ ମଧ୍ୟ ଆମ୍ଭମାନଙ୍କୁ ଜଟିଳତାରୁ ସରଳତା ଦିଗରେ, ଅସୀମରୁ ସସୀମ ଦିଗରେ; ଅନିଶ୍ଚିତରୁ ନିଶ୍ଚିତ ଦିଗରେ ଅଗ୍ରସର ହେବାକୁ ପଡ଼ିବ । ସମସ୍ତ କାବ୍ୟକବିତା ବର୍ଣ୍ଣମାଳାର ଅକ୍ଷରମାନଙ୍କର ସମଷ୍ଟି ମାତ୍ର ଓ ସମସ୍ତ ସଙ୍ଗୀତ କେତୋଟି ସ୍ୱରର ବିନ୍ୟାସ ମାତ୍ର । ତେଣୁ ପ୍ରକୃତିସମ୍ବନ୍ଧୀୟ ଜ୍ଞାନ ଦ୍ରବ୍ୟବିଜ୍ଞାନର ଆଲୋଚ୍ୟବସ୍ତୁ ରୂପେ ଆରବ୍ଧ ହୋଇ ଗଣିତ ଶାସ୍ତ୍ରର ଆଲୋଚ୍ୟ ବିଷୟ-ରୂପେ ସମାପ୍ତ ହେଲେ ତାହାର ଉପାଦେୟତା ବୃଦ୍ଧି ପାଇବ । ଅର୍ଥାତ୍ କର୍ମାଭିମୁଖୀଜ୍ଞାନ ନିମିତ୍ତ ପ୍ରତ୍ୟେକ ଆଲୋଚ୍ୟ ବସ୍ତୁର ଉପାଦାନ ଗୁଡ଼ିକର ସଂଖ୍ୟା ନିର୍ଦ୍ଦିଷ୍ଟଭାବେ ନିରୂପିତ ହେବା ଆବଶ୍ୟକ ।

ପ୍ରାକୃତିକ ଦର୍ଶନର ବିଷୟବସ୍ତୁର ଆଲୋଚନା ଓ ଅନୁଶୀଳନ ନିମିତ୍ତ ବେକନ୍ ତନ୍ନିହିତ ବିଜ୍ଞାନ ଓ ବିଦ୍ୟାଗୁଡ଼ିକର ପରିସର ସୁନିର୍ଦ୍ଦିଷ୍ଟ କରି ଦେଇଥିଲେ । ପ୍ରକୃତିର ଦୃଶ୍ୟମାନ ବସ୍ତୁଗୁଡ଼ିକର ଉପାଦାନ ଓ ନିମିତ୍ତ କାରଣର ନିର୍ଦ୍ଧାରଣ ତଥା ସେମାନଙ୍କର ଅନ୍ତର୍ନିହିତ ରୂପରେଖର ନିର୍ଣ୍ଣୟ ଓ ଅନ୍ତର୍ନିହିତ ପ୍ରଣାଳୀର ଆବିଷ୍କାର ପର୍ଯ୍ୟବେକ୍ଷଣାଶ୍ରୟୀ ପଦାର୍ଥ ବିଜ୍ଞାନଦ୍ୱାରା

ସମାହୃତ ହେବା ଉଚିତ । କିନ୍ତୁ ଶାଶ୍ୱତ, ମୌଳିକ ଓ ଅପରିବର୍ତ୍ତନୀୟ ପ୍ରାକୃତିକ ନିୟମଗୁଡ଼ିକର ଆବିଷ୍କାର ଓ ଆଲୋଚନା ମନନାଶ୍ରୟୀ ତତ୍ତ୍ୱବିଜ୍ଞାନ ଦ୍ୱାରା କରାଯିବା ଉଚିତ । ଏତଦ୍ୱାରା ତତ୍ତ୍ୱବିଜ୍ଞାନରୁ କର୍ମାଭିମୁଖୀ ଯାଦୁବିଦ୍ୟା ଏବଂ ପଦାର୍ଥ ବିଜ୍ଞାନରୁ ଶିଳ୍ପବିଦ୍ୟାର ସୃଷ୍ଟି କରାଯାଇ ପାରିବ ।

ପ୍ରକୃତିର ବ୍ୟାଖ୍ୟାକରଣକୁ ବେକନ୍ ଦୁଇଟି ପ୍ରଧାନ ଭାଗରେ ବିଭକ୍ତ କରୁଥିଲେ—ପ୍ରଥମତଃ ଅନୁଭୂତିରୁ ସାଧାରଣ ତଥା ସାର୍ବିକ ନିୟମ ବିଷୟକ ଜ୍ଞାନକୁ ଆରୋହଣ ଏବଂ ଦ୍ୱିତୀୟତଃ ଏହି ସାର୍ବିକ ନିୟମ ବିଷୟକ ଜ୍ଞାନରୁ ନୂତନ ପରୀକ୍ଷଣ ସମ୍ପାଦନ କରିବାର ସାମର୍ଥ୍ୟକୁ ଅବତରଣ । ପ୍ରଥମ ବିଭାଗରେ ସେ ତିନି ପ୍ରକାର କାର୍ଯ୍ୟର ଉଲ୍ଲେଖ କରିଥିଲେ । ସେଗୁଡ଼ିକ ହେଉଛି ଜ୍ଞାନେନ୍ଦ୍ରିୟାଦିର କାର୍ଯ୍ୟ, ସ୍ମୃତିର କାର୍ଯ୍ୟ ଓ ମନନ ଶକ୍ତିର କାର୍ଯ୍ୟ ।

ଏହି ତିନୋଟି ବୃତ୍ତିର ସମନ୍ୱୟ ଘଟାଇ ଫର୍ମ ଆବିଷ୍କାର କରିବା ନିମିତ୍ତ ବେକନ୍ ଯେଉଁ ପଦ୍ଧତି ନିର୍ଦ୍ଧାରଣ କରିଛନ୍ତି ତାହାକୁ ଅନୁଧ୍ୟାନ କଲେ ତହିଁରେ ନିମ୍ନଲିଖିତ କେତୋଟି ସୋପାନ ସନ୍ନିବେଶିତ ହୋଇଥିବା ଜଣା ପଡ଼ିବ ।

(୧) ଉଦ୍ଦିଷ୍ଟ ପ୍ରକୃତି ସମ୍ବଳିତ ଦୃଷ୍ଟାନ୍ତ ସଂଗ୍ରହଣ--

ଏହି ଦୃଷ୍ଟାନ୍ତ ଗୁଡ଼ିକ ଉଦ୍ଦିଷ୍ଟ ପ୍ରକୃତି ବ୍ୟତୀତ ଅନ୍ୟ ସମସ୍ତ ଗୁଣରେ ପରସ୍ପରଠାରୁ ଭିନ୍ନ ଓ ଯଥା ସମ୍ଭବ ବ୍ୟାପକ ହେବା ବିଧେୟ । ଏ ପ୍ରକାର ଦୃଷ୍ଟାନ୍ତର ତାଲିକାକୁ ବେକନ୍ ସତ୍ତାର୍ଥକ ତଥା ସଦର୍ଥକ ତାଲିକା (୨୭) ବୋଲି କହୁଥିଲେ । ଏହି ଦୃଷ୍ଟାନ୍ତମାନଙ୍କରେ ଉଦ୍ଦିଷ୍ଟ ପ୍ରକୃତିର ଫର୍ମ ଥିବା ଅବଶ୍ୟମ୍ଭାବୀ ।

---

(୨୭) **The Table of Essence and Presence.**

(୨) ଉଦ୍ଦିଷ୍ଟ ପ୍ରକୃତର ଅଭାବ ଥିବା ଦୃଷ୍ଟାନ୍ତ ସଂଗ୍ରହଣ—

ଏହି ଦୃଷ୍ଟାନ୍ତଗୁଡ଼ିକ ଅସଂଖ୍ୟ ହେବା ସ୍ୱାଭାବିକ । ତେଣୁ ଏଠାରେ କେବଳ ସତ୍ତ୍ୱାର୍ଥକ ତଥା ସଦର୍ଥକ ଦୃଷ୍ଟାନ୍ତ ସହିତ ପ୍ରକୃତର ଅଭାବ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ଗୁଣରେ ସାଦୃଶ୍ୟ ଥିବା ଦୃଷ୍ଟାନ୍ତଗୁଡ଼ିକ ସନ୍ନିବେଶିତ ହେବା ଆବଶ୍ୟକ । ଏ ପ୍ରକାର ଦୃଷ୍ଟାନ୍ତର ତାଲିକାକୁ ବେକନ୍ ବ୍ୟତିକ୍ରମ ତାଲିକା ବା ସମୀପବର୍ତ୍ତୀ ନଞର୍ଥକ ତାଲିକା (୨୮) ବୋଲି କହୁଥିଲେ ।

ସତ୍ତ୍ୱାର୍ଥକ ତଥା ସଦର୍ଥକ ତାଲିକାର ଦୃଷ୍ଟାନ୍ତଗୁଡ଼ିକରେ ଉଦ୍ଦିଷ୍ଟ ପ୍ରକୃତର ଧର୍ମ ରହିବା ଯେପରି ସ୍ୱାଭାବିକ, ବ୍ୟତିକ୍ରମ ତାଲିକାର ଦୃଷ୍ଟାନ୍ତ ଗୁଡ଼ିକରେ ତାହା ନ ରହିବା ମଧ୍ୟ ସେହିପରି ସ୍ୱାଭାବିକ ।

(୩) ଉଦ୍ଦିଷ୍ଟ ପ୍ରକୃତର ପରିମାଣାତ୍ମକ ପାର୍ଥକ୍ୟ ଥିବା ଦୃଷ୍ଟାନ୍ତ ସଂଗ୍ରହଣ—

କୌଣସି ଗୋଟିଏ ବସ୍ତୁରେ ଉଦ୍ଦିଷ୍ଟ ପ୍ରକୃତର ପରିମାଣାତ୍ମକ ଭେଦ ସୃଷ୍ଟି କରି କିମ୍ବା ଉଦ୍ଦିଷ୍ଟ ପ୍ରକୃତ ଭିନ୍ନ ଭିନ୍ନ ପରିମାଣରେ ଥିବା ବସ୍ତୁ-ମାନଙ୍କୁ ଲକ୍ଷ୍ୟ କରି ସେମାନଙ୍କର ତୁଳନାତ୍ମକ ବିଚାର କରିବା ଦ୍ୱାରା ଏ ପ୍ରକାର ଦୃଷ୍ଟାନ୍ତ ସଂଗୃହୀତ ହୁଏ । ଏ ପ୍ରକାର ଦୃଷ୍ଟାନ୍ତର ତାଲିକାକୁ ବେକନ୍ ପରିମାଣ-ଭେଦ-ସୂଚକ ତାଲିକା ବା ତୁଳନାମୂଳକ ତାଲିକା (୨୯) ବୋଲି କହୁଥିଲେ ।

ବସ୍ତୁ ଓ ତାହାର ଧର୍ମର ପାର୍ଥକ୍ୟ ହେଉଛି ରୂପ ଓ ସତ୍ତାର ପାର୍ଥକ୍ୟ, ବହିର୍ଦ୍ଦେଶ ଓ ଆଭ୍ୟନ୍ତରର ପାର୍ଥକ୍ୟ, ମାନବୀୟ ଦୃଷ୍ଟିରୁ ବସ୍ତୁ ଓ ବିଶ୍ୱଜନୀନ ଦୃଷ୍ଟିରୁ ବସ୍ତୁର ପାର୍ଥକ୍ୟ । ତେଣୁ ଉଦ୍ଦିଷ୍ଟ ପ୍ରକୃତରେ ତାରତମ୍ୟ ଥିଲେ ତାହାର ଧର୍ମରେ ମଧ୍ୟ ତାରତମ୍ୟ ରହିବା ଅନିବାର୍ଯ୍ୟ ।

---

(୨୮) The table of Deviation or of Absence in proximity

(୨୯) The table of Degrees or the table of Comparison

ବେକନ୍‌ଙ୍କର ଉପର୍ଯ୍ୟୁକ୍ତ ତନୋଟି ତାଲିକାର ପ୍ରସ୍ତୁତ ସ୍ପଷ୍ଟତଃ ତାଙ୍କର ପରବର୍ତ୍ତୀ ଦାର୍ଶନିକ ଜନ ଷ୍ଟୁଆର୍ଟ ମିଲ୍‌ଙ୍କର (୩୦) କାର୍ଯ୍ୟ-କାରଣ-ନିରୂପକ ପଦ୍ଧତର ଦୃଷ୍ଟାନ୍ତ ସଂଗ୍ରହଣ ତୁଲ୍ୟ । ମିଲ୍‌ଙ୍କ ପ୍ରଣୀତ ତର୍କଶାସ୍ତ୍ରରେ ପାଞ୍ଚ ପ୍ରକାର କାର୍ଯ୍ୟକାରଣ-ନିରୂପକ ପଦ୍ଧତର ଉଲ୍ଲେଖ ରହିଅଛି । ସେ ଗୁଡ଼ିକ ହେଉଛି ଅନ୍ୱୟ ପଦ୍ଧତ, ବ୍ୟତରେକ ପଦ୍ଧତ, ଯୁଗ୍ମ ପଦ୍ଧତ, ସହଗୃଣ ପରବର୍ତ୍ତିନ ପଦ୍ଧତ ଓ ପରଶେଷ ପଦ୍ଧତ (୩୧) । ବେକନ୍‌ଙ୍କର ପ୍ରଥମ ତାଲିକାର ଦୃଷ୍ଟାନ୍ତ ଅନ୍ୱୟ ପଦ୍ଧତର ଦୃଷ୍ଟାନ୍ତ ବା ଯୁଗ୍ମ ପଦ୍ଧତର ସଦର୍ଥକ ଦୃଷ୍ଟାନ୍ତର ଅନୁରୂପ । ସେହିପରି ବେକନ୍‌ଙ୍କର ଦ୍ୱିତୀୟ ଓ ତୃତୀୟ ତାଲିକାର ଦୃଷ୍ଟାନ୍ତ ଯଥାକ୍ରମେ ଯୁଗ୍ମ ପଦ୍ଧତର ନଞର୍ଥକ ଦୃଷ୍ଟାନ୍ତ ଓ ସହଗୃଣ ପରବର୍ତ୍ତିନ ପଦ୍ଧତର ଦୃଷ୍ଟାନ୍ତ ଅନୁରୂପ ।

ଏହି ନିବିଧ ଦୃଷ୍ଟାନ୍ତ ତାଲିକାର ଅନୁଧାନ କର ମନୁଷ୍ୟର ଧୀଶକ୍ତିକୁ ଏପର ଏକ ପ୍ରକୃତର ଆବିଷ୍କାର କରିବାକୁ ସମ୍ଭବ ଯାହାକି ଏକ ବ୍ୟାପକତର ପ୍ରକୃତର ଅଂଶ ବିଶେଷ ହୋଇଥିବ, ଅଥଚ ତାହା ଉଦ୍ଦିଷ୍ଟ ପ୍ରକୃତର ଉପସ୍ଥିତ କ୍ଷେତ୍ରରେ ଉପସ୍ଥିତ, ଅନୁପସ୍ଥିତ କ୍ଷେତ୍ରରେ ଅନୁପସ୍ଥିତ କ୍ରମବର୍ଦ୍ଧନ କ୍ଷେତ୍ରରେ କ୍ରମବର୍ଦ୍ଧମାନ ଏବଂ କ୍ରମ-ହ୍ରାସନ କ୍ଷେତ୍ରରେ କ୍ରମ ହ୍ରସମାନ ହେଉଥିବ । ବେକନ୍‌ଙ୍କ ମତରେ,କେବଳ ସଦର୍ଥକ ଦୃଷ୍ଟାନ୍ତରୁ ଧୀଶକ୍ତି ଏହି ବ୍ୟାପକତର ପ୍ରକୃତର ସନ୍ଧାନ ପାଇଯାଇଛି ବୋଲି ମନେ କଲେ, ତାହା ଭ୍ରାନ୍ତ, ଅସ୍ପଷ୍ଟ ଅଥବା ପରବର୍ତ୍ତିନସାପେକ୍ଷ ହେବା ସମ୍ଭବ-ପର । ତେଣୁ ସହସା ସିଦ୍ଧାନ୍ତରେ ଉପନୀତ ହେବାର ଦୁଃସାହସିକତା ପରିହାର କର ସଦର୍ଥକ ଦୃଷ୍ଟାନ୍ତ-ସୂଚିତ ସମ୍ଭାବ୍ୟ ବିକଳ୍ପଗୁଡ଼ିକୁ ନଞର୍ଥକ

---

(୩୦) John Stuart Mill (1806-1873)

(୩୧) Method of Agreement
Method of Difference
Joint Method
Method of Concomitant Variations
and Method of Residues

ଦୃଷ୍ଟାନ୍ତ ସାହାଯ୍ୟରେ ବର୍ଜନ କରାଗଲେ ପରଶେଷରେ ଗୋଟିଏ ସଦର୍ଥକ, ସୁସ୍ପଷ୍ଟ, ସୁଦୃଢ଼ ଧର୍ମସମ୍ବନ୍ଧୀୟ ଧାରଣା ଜାତ ହେବ ।

ଅନେକ ପ୍ରକୃତ ସଶ୍ଳିଷ୍ଟ ଜଟିଳବସ୍ତୁ ଯଥା—ସିଂହ,ଇଗଲ, ଗୋଲାପ, ସ୍ୱର୍ଣ୍ଣ ଇତ୍ୟାଦିର ଯୁଗ୍ମ ଧର୍ମର ଆବିଷ୍କାରଠାରୁ ଗୋଟିଏ ମାତ୍ର ପ୍ରକୃତ ଯଥା—ଉତ୍ତାପ, ଆଲୋକ, ଓଜନ ଇତ୍ୟାଦିର ମୌଳିକ ଧର୍ମର ଆବିଷ୍କାର ଅପେକ୍ଷାକୃତ ସହଜ । ତଥାପି ଏଠାରେ ମଧ୍ୟ ଯଥାର୍ଥ ଧର୍ମର ସନ୍ଧାନ ପ୍ରଥମ ପ୍ରୟାସରେ-ହିଁ ପାଇଯିବାକୁ ଆଶା କରିବା ଅନୁଚିତ ।

ବେକନ୍‌ଙ୍କ ମତରେ ସତ୍ୟାନୁସନ୍ଧାନ କ୍ଷେତ୍ରରେ ଲକ୍ଷ୍ୟଭ୍ରଷ୍ଟତା ବା ଭ୍ରାନ୍ତି ଅପେକ୍ଷା ବିଶୃଙ୍ଖଳତା ଅଧିକ ଦୂଷଣୀୟ । ତେଣୁ ଲକ୍ଷ୍ୟଭ୍ରଷ୍ଟ ହେବାର ସମ୍ଭାବନାରେ ବିଚଳିତ ନ ହୋଇ ଅଧିଗତ ଜ୍ଞାନକୁ ଶୃଙ୍ଖଳାବଦ୍ଧ-ଭାବେ ଉପସ୍ଥାପିତ କରି ତାହାର ଅନୁଧ୍ୟାନ କରିବା ଦ୍ୱାରା ଅନଧିଗତ ନିୟମ ସମ୍ବନ୍ଧୀୟ ଜ୍ଞାନରେ ଉପନୀତ ହେବା ସମ୍ଭବପର ।

ବେକନ୍ ତାଙ୍କର 'ନୂତନ ସାଧନ' ଗ୍ରନ୍ଥରେ 'ଉତ୍ତାପ' (୩୨) ସମ୍ବନ୍ଧୀୟ ତ୍ରିବିଧ ତାଲିକା ଅନ୍ତର୍ଗତ ଦୃଷ୍ଟାନ୍ତ ମାନଙ୍କର ଆଲୋଚନା କରି ପ୍ରଥମ ପ୍ରୟାସର ଫଳ ସ୍ୱରୂପ ଉତ୍ତାପର ଏକ ବିଶ୍ଳେଷଣୀନ ସଂଜ୍ଞା ଦେଇଛନ୍ତି । ତାହା ହେଉଛି—'ଉତ୍ତାପ ଏକ ମୁଖ୍ୟତଃ ଊର୍ଦ୍ଧ୍ୱଦିଗରେ ପ୍ରସାରଶୀଳ ଏବଂ ବସ୍ତୁର ଅପେକ୍ଷାକୃତ କ୍ଷୁଦ୍ର ଅଂଶରେ ସକ୍ରିୟ ବେଗବାନ୍ ତଥା ଉଗ୍ର ଅଥଚ ବାଧାପ୍ରାପ୍ତ ଗତି ।' ଉତ୍ତାପକୁ ଗୋଟିଏ ପ୍ରକାର ଗତି ବୋଲି ଜାଣିବା ଦ୍ୱାରା ତାହାର ଯଥାର୍ଥ ନିୟମ ସମ୍ବନ୍ଧୀୟ ଜ୍ଞାନରେ ଅଗ୍ରଗତି ଘଟିଛି ବୋଲି ବେକନ୍ ଦାବୀ କରୁଥିଲେ ଏବଂ ଯେକୌଣସି ବସ୍ତୁରେ ଉପଯୁକ୍ତ ପ୍ରକାରର ଗତି ସଂଜାତ କରିପାରିଲେ ତାହା ଉତ୍ତପ୍ତ ହେବା ଅନିବାର୍ଯ୍ୟ ବୋଲି ମତ ପ୍ରକାଶ କରିଥିଲେ ।

ବେକନ୍‌ଙ୍କ ମତରେ ଯେ କୌଣସି ପ୍ରକୃତିର ତାଲିକା ମାନଙ୍କର ଅନୁଧ୍ୟାନ କରି ତାହାର ଯଥାର୍ଥ ସଂଜ୍ଞା ନିର୍ଦ୍ଧାରଣ କରିବା ତଥା

(୩୨) **Heat**

ତାହାର ସଂଯୁକ୍ତ ଧର୍ମ ସମ୍ବନ୍ଧରେ ଜ୍ଞାନାର୍ଜନ କରିବା ନିମିତ୍ତ ତାତ୍କାଳିକ ପ୍ରତ୍ୟେକ ଓ ସମସ୍ତ ଦୃଷ୍ଟାନ୍ତ ଅଭିନ୍ନବେଶ ସହକାରେ ବିଚାର୍ଯ୍ୟ; କିନ୍ତୁ ଯେଉଁସବୁ ଦୃଷ୍ଟାନ୍ତରେ ଉଦ୍ଦିଷ୍ଟ ପ୍ରକୃତିର ସ୍ୱରୂପ ସୁସ୍ପଷ୍ଟ ତହିଁରେ ସବିଶେଷ ଗୁରୁତ୍ୱ ଅର୍ପଣ କରିବା ଯୁକ୍ତିଯୁକ୍ତ । ଏପ୍ରକାର ଦୃଷ୍ଟାନ୍ତ ଗୁଡ଼ିକୁ ବେକନ୍ ବିଶେଷ କ୍ଷମତାପନ୍ନ ଦୃଷ୍ଟାନ୍ତ (୩୬୩) ଆଖ୍ୟା ଦେଇଥିଲେ ।

ବିଶେଷ କ୍ଷମତାପନ୍ନ ଦୃଷ୍ଟାନ୍ତମାନଙ୍କର ଆଲୋଚନାରେ ବେକନ୍ ପ୍ରଥମତଃ ନିଃସଙ୍ଗ ଦୃଷ୍ଟାନ୍ତ (୩୬୪) ଗୁଡ଼ିକ ବିଚାର୍ଯ୍ୟ ବୋଲି ମତ ପ୍ରଦାନ କରିଛନ୍ତି । ତାଙ୍କ ମତରେ ନିଃସଙ୍ଗ ଦୃଷ୍ଟାନ୍ତ ଦୁଇ ପ୍ରକାର ହୋଇପାରେ । ଯେଉଁବସ୍ତୁ ଗବେଷଣୀୟ ପ୍ରକୃତି ବ୍ୟତୀତ ଅନ୍ୟ ସମସ୍ତ ଗୁଣରେ ଅନ୍ୟାନ୍ୟ ବସ୍ତୁମାନଙ୍କଠାରୁ ଭିନ୍ନ, ତାହା ଗବେଷଣୀୟ ପ୍ରକୃତିର ସଦର୍ଥକ ନିଃସଙ୍ଗ ଦୃଷ୍ଟାନ୍ତ । ବର୍ଣ୍ଣ-ପ୍ରକୃତିର ଗବେଷଣାରେ ତ୍ରିପାର୍ଶ୍ୱବିଶିଷ୍ଟ ଘନ କାଚ ବା ସ୍ଫଟିକ ହେଉଛି ସଦର୍ଥକ ନିଃସଙ୍ଗ ଦୃଷ୍ଟାନ୍ତ । ଏହା ବିଭିନ୍ନ ବର୍ଣ୍ଣବିଶିଷ୍ଟ ପୁଷ୍ପ, ପ୍ରସ୍ତର, ଧାତବଦ୍ରବ୍ୟ ଇତ୍ୟାଦିଠାରୁ ବର୍ଣ୍ଣ ବ୍ୟତୀତ ଅନ୍ୟ ସମସ୍ତ ଗୁଣରେ ଭିନ୍ନ ଏବଂ ଏହାର ପାର୍ଶ୍ୱ ପରିବର୍ତ୍ତନ ଦ୍ୱାରା ଆଲୋକର ବିଭିନ୍ନ ବର୍ଣ୍ଣ ଏଥିରେ ପ୍ରତିଫଳିତ ହୋଇ ନିକଟବର୍ତ୍ତୀ ବସ୍ତୁକୁ ସଂପ୍ରସାରିତ ହୋଇଥାଏ । ଏହାଦ୍ୱାରା ବସ୍ତୁର ବର୍ଣ୍ଣ ତାହାର ଆଲୋକକୁ ଗ୍ରହଣ କରିବାର ପ୍ରକାରିତା ଉପରେ ନିର୍ଭର କରେ ବୋଲି ଜଣାପଡେ । ଯେଉଁ ବସ୍ତୁ ଗବେଷଣୀୟ ପ୍ରକୃତି ବ୍ୟତୀତ ଅନ୍ୟ ସମସ୍ତ ଗୁଣରେ ଅନ୍ୟାନ୍ୟ ବସ୍ତୁମାନଙ୍କ ସହିତ ସମାନ, ତାହା ଗବେଷଣୀୟ ପ୍ରକୃତିର ନଞର୍ଥକ ନିଃସଙ୍ଗ ଦୃଷ୍ଟାନ୍ତ । ବର୍ଣ୍ଣ-ପ୍ରକୃତିର ଗବେଷଣାରେ ସମଜାତୀୟ ପୁଷ୍ପର ବର୍ଣ୍ଣବୈଷମ୍ୟ ହେଉଛି ନଞର୍ଥକ ନିଃସଙ୍ଗ ଦୃଷ୍ଟାନ୍ତ । ଦୁଇଟି ସମଜାତୀୟ ପୁଷ୍ପ ପରସ୍ପର ସର୍ବତୋଭାବେ ସମାନ ହୋଇଥିଲେ ମଧ୍ୟ ବର୍ଣ୍ଣରେ ଭିନ୍ନ ଭିନ୍ନ ହୋଇ ପାରୁଥିବାରୁ ବସ୍ତୁର ଅନ୍ତର୍ନିହିତ ମୁଖ୍ୟ ଗୁଣ ଉପରେ ନିର୍ଭରଶୀଳ ନୁହେଁ । ଏବଂ ଏହା

(୩୬୩) Prerogative Instances

(୩୬୪) Solitary Instances

ତାହାର ସ୍ଥୂଳ ଅଂଶର ସଂଗଠନ ଉପରେ ନିର୍ଭର କରେ ବୋଲି ଜଣାପଡ଼େ ।

ବିଶେଷ କ୍ଷମତାପନ୍ନ ଦୃଷ୍ଟାନ୍ତମାନଙ୍କର ଆଲୋଚନାରେ ବେକନ୍ ଗମକ ଦୃଷ୍ଟାନ୍ତ (୩୫) ର ବିଷୟରକୁ ଦ୍ୱିତୀୟ ସ୍ଥାନ ଦେଇଛନ୍ତି । ଏ ପ୍ରକାର ଦୃଷ୍ଟାନ୍ତ ହେଉଛି ଗବେଷଣୀୟ ପ୍ରକୃତି ନ ଥିବା ବସ୍ତୁରେ ତାହାର ସୃଷ୍ଟି ହେଉଥିବା ଅବସ୍ଥା ବା ସେହି ପ୍ରକୃତି ଥିବା ବସ୍ତୁରୁ ତାହାର ଅପସାରିତ ହେଉଥିବା ଅବସ୍ଥା । କୌଣସି ପ୍ରକୃତିର ସୃଷ୍ଟି ବା ବିନାଶ ବ୍ୟତୀତ ତାହାର ହ୍ରାସ ବା ବୃଦ୍ଧି ଘଟିବା ଅବସ୍ଥା ମଧ୍ୟ ଗମକ ଦୃଷ୍ଟାନ୍ତର ଅନ୍ତର୍ଗତ । ଏ ପ୍ରକାର ଦୃଷ୍ଟାନ୍ତ ଗୁଡ଼ିକରେ ଦତ୍ତ ପ୍ରକୃତିର ଫର୍ମର ମଧ୍ୟ ଯଥାଯଥ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ତେଣୁ ଭ୍ରାନ୍ତି ନିରାକରଣ ତଥା ଫର୍ମର ଆବିଷ୍କାର ନିମିତ୍ତ ଏ ପ୍ରକାର ଦୃଷ୍ଟାନ୍ତ ଅତ୍ୟନ୍ତ ଉପଯୋଗୀ । କିନ୍ତୁ ଏଠାରେ ନିମିତ୍ତ କାରଣକୁ ଫର୍ମ ବୋଲି ମନେ କରିବାର ସମ୍ଭାବନା ଥାଏ । କିନ୍ତୁ ନିମିତ୍ତକାରଣ ଫର୍ମର ବାହକ ମାତ୍ର । ତେଣୁ ଉଭୟଙ୍କର ପାର୍ଥକ୍ୟ ରକ୍ଷା କରି ଫର୍ମର ସ୍ପଷ୍ଟୀକରଣ ଆବଶ୍ୟକ ।

ଗବେଷଣୀୟ ପ୍ରକୃତି ଯଦି ଶ୍ୱେତତ୍ୱ ହୁଏ, ତେବେ କାଚ ଫଳକର ଚୂର୍ଣ୍ଣୀକରଣ ହେଉଛି ତାହାର ଗମକ ଦୃଷ୍ଟାନ୍ତ । କାଚ ଫଳକ ସ୍ୱଚ୍ଛ, ଶ୍ୱେତ ନୁହେଁ ; କିନ୍ତୁ ଚୂର୍ଣ୍ଣୀଭୂତ କାଚ ଶ୍ୱେତ, ସ୍ୱଚ୍ଛ ନୁହେଁ । ସେହିପରି ଜଳ ସ୍ୱଚ୍ଛ, କିନ୍ତୁ ଫେନିଳ ଜଳ ଶ୍ୱେତ । ତେଣୁ ଜଳର ଆଲୋଡ଼ନ ହେଉଛି ଶ୍ୱେତତ୍ୱର ଗମକ ଦୃଷ୍ଟାନ୍ତ । ଏଠାରେ ଉଭୟ କ୍ଷେତ୍ରରେ ଅନ୍ୟ ଏକ ସ୍ୱଚ୍ଛ ପଦାର୍ଥ ଅର୍ଥାତ୍ ବାୟୁ କଣିକା କାଚ ବା ଜଳ କଣିକା ସହିତ ସମ୍ମିଶ୍ରିତ ହେଲେ ଶ୍ୱେତତ୍ୱର ସୃଷ୍ଟି ହେଉଅଛି । ତେଣୁ ଏଠାରେ ଶ୍ୱେତତ୍ୱ ନିମିତ୍ତ ବାୟୁ ଆବଶ୍ୟକ ବା ଶ୍ୱେତତ୍ୱ କେବଳ ସ୍ୱଚ୍ଛ ପଦାର୍ଥରେ ହିଁ ସମ୍ଭବରେ ବୋଲି ଭ୍ରାନ୍ତ ଜାତ ହେବାର ସମ୍ଭାବନା ରହିଛି । କିନ୍ତୁ ଏହି ଧାରଣାର ମିଥ୍ୟାତ୍ୱ ପ୍ରତିପାଦନ କରିବା ନିମିତ୍ତ ଅସଂଖ୍ୟ ବ୍ୟତିରେକୀ ଦୃଷ୍ଟାନ୍ତ ରହିଛି । ଯଥାର୍ଥରେ ଶ୍ୱେତତ୍ୱ

(୩୫) Migratory Instances.

ହେଉ ବା ଯେ କୌଣସି ବର୍ଣ୍ଣ ହେଉ ତାହା ଆଲୋକର ବିଭିନ୍ନ ପ୍ରକାର ପ୍ରତଫଳନର ପରିଣତ । କାଚ କଣିକା ବା ଜଳ କଣିକା ମଧ୍ୟକୁ ବାୟୁ-କଣିକାର ପ୍ରବେଶ ହେଉଛି ଶ୍ୱେତତ୍ୱର ନିମିତ୍ତ କାରଣ, ତାହାର ଧର୍ମ ନୁହେଁ ।

ଫେନିଲ ଜଳର ଫେନଶୂନ୍ୟ ଅବସ୍ଥାକୁ ପରିବର୍ତ୍ତନ ଏବଂ ଶ୍ୱେତ କାଗଜର ଆର୍ଦ୍ରତା ଏ ଦୁଇଟିକୁ ଶ୍ୱେତତ୍ୱ-ପ୍ରକୃତିର ଗମକ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇ ପାରେ । ଆଲୋଡ଼ିତ ଫେନିଲ ଜଳ କ୍ରମେ କ୍ରମେ ଫେନ-ଶୂନ୍ୟ ଅବସ୍ଥାକୁ ପରିବର୍ତ୍ତିତ ହେବା ସମୟରେ ଶ୍ୱେତତ୍ୱ କ୍ରମେ କ୍ରମେ ହ୍ରାସ ପାଏ ଓ ସ୍ୱଚ୍ଛତାର କ୍ରମେ କ୍ରମେ ବୃଦ୍ଧି ଘଟେ । ଏହା ଶ୍ୱେତତ୍ୱର ବିନାଶ ସୂଚକ ଗମକ ଦୃଷ୍ଟାନ୍ତ । ଶ୍ୱେତ ବର୍ଣ୍ଣର ଶୁଷ୍କ କାଗଜର ଶ୍ୱେତତ୍ୱ ତାହାର ଆର୍ଦ୍ରାବସ୍ଥାରେ ହ୍ରାସପାଏ ଏବଂ ଏହା ପୁନଶ୍ଚ ଶୁଷ୍କ ହେଲେ ତାହାର ଶ୍ୱେତତ୍ୱର ପ୍ରତ୍ୟାବର୍ତ୍ତନ ଘଟେ । ଏଠାରେ ଶ୍ୱେତତ୍ୱର ସୃଷ୍ଟି ବା ବିନାଶ ନ ହୋଇ ତାହା ପରିମାଣତଃ ପରିବର୍ତ୍ତିତ ହୁଏ । ଏହା ଶ୍ୱେତତ୍ୱର ପରିମାଣାତ୍ମକ ପରିବର୍ତ୍ତନ ସୂଚକ ଗମକ ଦୃଷ୍ଟାନ୍ତ ।

ବେକନ୍ ବିଶେଷ କ୍ଷମତାପନ୍ନ ଦୃଷ୍ଟାନ୍ତର ଆଲୋଚନାରେ ପ୍ରକାଶ୍ୟ ବା ଚିତ୍ତାକର୍ଷକ ଦୃଷ୍ଟାନ୍ତ (୩୬) ଗୁଡ଼ିକୁ ତୃତୀୟ ସ୍ଥାନ ଦେଇଛନ୍ତି । ଏଗୁଡ଼ିକୁ ସେ ମୁକ୍ତ ଓ ପ୍ରଭାବଶାଳୀ ଦୃଷ୍ଟାନ୍ତ (୩୭) ବୋଲି ମଧ୍ୟ କହିଥିଲେ । ଏ ଗୁଡ଼ିକରେ ଗବେଷଣୀୟ ପ୍ରକୃତି ଉନ୍ମୁକ୍ତ, ଅଫଳଗ୍ନ, ସୁସ୍ପଷ୍ଟ ଓ ସୁଦୀପ୍ତରୂପେ ପ୍ରକାଶ ପାଏ । ସାଧାରଣତଃ ଗୋଟିଏ ବସ୍ତୁ ଅନେକ ଗୁଡ଼ାଏ ପ୍ରକୃତିବିଶିଷ୍ଟ ହୋଇଥିବାରୁ ତନ୍ମଧ୍ୟରୁ ପ୍ରତ୍ୟେକେ ଅନ୍ୟର ସୁସ୍ପଷ୍ଟ ପ୍ରକାଶରେ ବାଧା ସଞ୍ଜାତ କରିଥାନ୍ତି । କିନ୍ତୁ ଏ ପ୍ରକାର ଦୃଷ୍ଟାନ୍ତ ଗୁଡ଼ିକରେ ବାଧାର ଅଭାବ ଅଥବା ସ୍ୱଳ୍ପ ପ୍ରଭାବ ହେତୁ ଉଦ୍ଦିଷ୍ଟ ପ୍ରକୃତି ତଥା ତାହାର ଧର୍ମର ବିକାଶ ଓ ପ୍ରକାଶ ଏତେ ସୁସ୍ପଷ୍ଟରୂପେ ପ୍ରତିଭାତ ଯେ ଗବେଷକର ଦୃଷ୍ଟି ସ୍ୱତଃ ସେ

(୩୬) Shining or Striking Instances
(୩୭) Instances Freed and Predominant

ବଗକୁ ଆକୃଷ୍ଟ ହୋଇଯାଏ । ତଥାପି ପ୍ରଗାଢ ସର୍ବଦା ସତ୍ୟ ନୁହେଁ । ତେଣୁ ବେକନ୍ ଏଠାରେ ମଧ୍ୟ ଗବେଷକକୁ ସଯତ ରହିବା ନିମିତ୍ତ ଉପଦେଶ ଦେଇଛନ୍ତି ।

ଗୁରୁତା ପ୍ରକୃତର ପ୍ରକାଶ୍ୟ ଦୃଷ୍ଟାନ୍ତ ହେଉଛି ପାରଦ । ପାରଦ ସ୍ୱର୍ଣ୍ଣବ୍ୟତୀତ ଅନ୍ୟାନ୍ୟ ଧାତୁମାନଙ୍କଠାରୁ ଅଧିକ ଓଜନ ବିଶିଷ୍ଟ । କିନ୍ତୁ ଅନ୍ୟାନ୍ୟ ଧାତୁ ଘନ ପଦାର୍ଥ ହୋଇଥିବା ସ୍ଥଳେ ପାରଦ ତରଳ । ତେଣୁ ବସ୍ତୁର ସାନ୍ଦ୍ରତା ବା ଘନତ୍ୱ ଉପରେ ଗୁରୁତା ନିର୍ଭରଶୀଳ ନୁହେଁ ଏବଂ ଏହା କେବଳ ବସ୍ତୁର ପରିମାଣ ଉପରେ ହିଁ ନିର୍ଭରଶୀଳ ଏହା ସୁସ୍ପଷ୍ଟ ।

ବେକନ୍ ସର୍ବମୋଟ ସପ୍ତବିଂଶ ପ୍ରକାର ବିଶେଷ କ୍ଷମତାପନ୍ନ ଦୃଷ୍ଟାନ୍ତର ଉଲ୍ଲେଖ କରି ସେମାନଙ୍କର ଉପାଦେୟତା ସମ୍ବନ୍ଧରେ ସୂଚନା ଦେଇଛନ୍ତି । ଏଗୁଡ଼ିକର ଆଲୋଚନା ବ୍ୟତୀତ ତାଙ୍କର ନୂତନ ପଦ୍ଧତିର ଅନ୍ୟାନ୍ୟ ଆଲୋଚ୍ୟ ବିଷୟ ସ୍ୱରୂପ ବେକନ୍ ଯେଉଁଗୁଡ଼ିକ ଉଲ୍ଲେଖ କରିଥିଲେ, ସେ ଗୁଡ଼ିକ ହେଉଛି—ଆରୋହଅବଲମ୍ବନ, ଆରୋହ ମାର୍ଜନ, ଗବେଷଣୀୟ ବିଷୟର ପ୍ରକୃତି ଦୃଷ୍ଟିରୁ ଗବେଷଣାର ପରିବର୍ତ୍ତନ, ଗବେଷଣାର କ୍ରମ ନିରୂପଣ, ଗବେଷଣାର ପରିସର, ବ୍ୟାବହାରିକ ପ୍ରୟୋଗ ବା ମାନବୀୟ ଦୃଷ୍ଟିକୋଣରୁ ବସ୍ତୁବର୍ଗର ଉପାଦେୟତା, ଗବେଷଣା ନିମିତ୍ତ ପ୍ରସ୍ତୁତି ଏବଂ ସାର୍ବିକ ନିୟମମାନଙ୍କର ଊର୍ଦ୍ଧ୍ୱଗାମୀ ଓ ନିମ୍ନଗାମୀ ସ୍ତର (୩୮) ।

(୩୮) Supports of Induction
Rectification of Induction
Varying the Investigation according to the nature of the subject
Prerogative Natures with respect to Investigation
Limits of Investigation
Application to Practice or things in their relation to man.
Preparation for Investigation
Ascending and Descending Scale of Axioms

ଏଗୁଡ଼ିକର ଯଥାଯଥ ଅନୁଶୀଳନ ଦ୍ୱାରା ତାଙ୍କର ତର୍କ ପଦ୍ଧତି କେବଳ ଅମୂର୍ତ୍ତି ଧାରଣାର ବିନ୍ୟାସ ପଦ୍ଧତି ହେବା ପରିବର୍ତ୍ତେ ଉପାଦେୟ ଜ୍ଞାନ ଆହରଣ ଏବଂ ସେହି ଜ୍ଞାନକୁ କର୍ମରେ ନିୟୋଜନ କରିବାର ପଦ୍ଧତି ହୋଇ ପାରିବ ବୋଲି ବେକନ୍ ବିଶ୍ୱାସ କରୁଥିଲେ । ବେକନ୍ ଦୃଢ଼ ଆଶା ପୋଷଣ କରିଥିଲେ ଯେ ଏହି ପଦ୍ଧତି ସାହାଯ୍ୟରେ ପ୍ରକୃତି ଉପରେ ମନୁଷ୍ୟ ପ୍ରଭାବ ବିସ୍ତାର କରିବା ନିମିତ୍ତ ସମର୍ଥ ହେବ ଏବଂ ସୁନିଶ୍ଚିତଭାବେ ତାହାର ଶ୍ରୀବୃଦ୍ଧି ଘଟିବ ।



# ପଞ୍ଚମ ପରିଚ୍ଛେଦ

# ସନ୍ଦର୍ଭ

ବେକନ୍‌ଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ ତାଙ୍କର 'ସନ୍ଦର୍ଭ' ପୁସ୍ତକ ଜନ ସାଧାରଣରେ ସର୍ବାପେକ୍ଷା ଅଧିକ ସୁପରିଚିତ ଓ ସମାଦୃତ । ଏଥିରେ ସନ୍ନିବେଶିତ ନିବନ୍ଧଗୁଡ଼ିକ ପୁନରୁକ୍ତିଶୂନ୍ୟ, ସାରଗର୍ଭକ, ସଂକ୍ଷିପ୍ତ ଭାଷାରେ ଲିଖିତ । ଏଗୁଡ଼ିକ ଭାବଉଦ୍ଦୀପକ ତଥା ବେକନ୍‌ଙ୍କ ଚିନ୍ତାଧାରାର ବାହକ । ସନ୍ଦର୍ଭରେ ବ୍ୟବହୃତ ବାକ୍ୟଗୁଡ଼ିକର ଗଠନ ଅନେକତ୍ର ନିୟମାନୁବନ୍ଧ ନୁହେଁ । କିନ୍ତୁ ଏଠାରେ ବେକନ୍‌ଙ୍କ ଭାଷା ପ୍ରାଞ୍ଜଳ, ଭାବ ଗମ୍ଭୀର, ବର୍ଣ୍ଣନା ଚିତ୍ତାକର୍ଷକ, ଦୃଷ୍ଟାନ୍ତ ଜ୍ଞାନସୂଚକ ଓ ଶୈଳୀ ମନୋମୁଗ୍ଧକର ।

ବେକନ୍‌ଙ୍କ ରଚନାବଳୀରେ ନୀତିଶାସ୍ତ୍ର ସମ୍ବନ୍ଧୀୟ ବିସ୍ତୃତ ଆଲୋଚନା କୌଣସି ଗୋଟିଏ ପୁସ୍ତକରେ କରାଯାଇନାହିଁ । ନୈତିକତା ସମ୍ବନ୍ଧରେ ତାଙ୍କର ମତାମତ ବିକ୍ଷିପ୍ତ ଭାବରେ ଅନେକତ୍ର ଓ ସନ୍ଦର୍ଭ ପୁସ୍ତକର କେତେ ଗୁଡ଼ିଏ ପ୍ରବନ୍ଧରେ ରହିଅଛି ।

ବେକନ୍‌ଙ୍କ ମତରେ ଭଲ ଓ ମନ୍ଦର ପାର୍ଥକ୍ୟଗତ ଜ୍ଞାନ ମନୁଷ୍ୟର ସହଜାତ । ମନୁଷ୍ୟ ପ୍ରକୃତିର ସ୍ୱଭାବଗତ ନିୟମରେ ଏହାର ସୁସ୍ପଷ୍ଟ ସ୍ୱାକ୍ଷର ରହିଅଛି । ଧର୍ମପୁସ୍ତକମାନଙ୍କରେ ବିଧି-ନିଷେଧ

କର୍ତ୍ତବ୍ୟ-ପରିହର୍ତ୍ତବ୍ୟ ବିଷୟାବଳୀର ସ୍ପଷ୍ଟ ସୂଚନା ରହିଅଛି । ବିଚାର ବୁଦ୍ଧି ବଳରେ ମନୁଷ୍ୟ ଧର୍ମାଧର୍ମ ନ୍ୟାୟାନ୍ୟାୟର ଜ୍ଞାନ ଅନାୟାସରେ ଲାଭ କରିପାରେ । ତେଣୁ ଏ କ୍ଷେତ୍ରରେ ମନୁଷ୍ୟର ଜ୍ଞାନର ଅଭାବ ନ ଥାଏ; ଅଭାବ ଥାଏ ପ୍ରବୃତ୍ତି-ନିବୃତ୍ତିର । ନୈତିକ ଜୀବନ ଯାପନ ନିମିତ୍ତ ବେକନ୍ ବାଲ୍ୟାବସ୍ଥାରୁହିଁ ଉପଯୁକ୍ତ ନୀତିଶିକ୍ଷା ଦେବା ଉପରେ ପ୍ରାଧାନ୍ୟ ଦେଉଥିଲେ । ଏହାଦ୍ୱାରା ମନୁଷ୍ୟର ମାନସିକ ପ୍ରବୃତ୍ତି ଓ ନିବୃତ୍ତି ଏପରି ଭାବରେ ଗଠିତ ହୋଇଯାଏ ଯେ ପରବର୍ତ୍ତୀ ଜୀବନରେ ଅନୈତିକ କାର୍ଯ୍ୟ କରିବା ନିମିତ୍ତ ଆଗ୍ରହ ଜାତ ହୋଇ ପାରେ ନାହିଁ ।

ବେକନ୍‌ଙ୍କ ମତରେ ଅନ୍ୟାନ୍ୟ ବିଜ୍ଞାନମାନଙ୍କ ଭଳି ନୀତିବିଜ୍ଞାନ ମଧ୍ୟ ଫଳପ୍ରଦ ହେବା ଆବଶ୍ୟକ ଏବଂ ଅନ୍ୟାନ୍ୟ ବିଜ୍ଞାନମାନଙ୍କ ଭଳି ଏହା ମଧ୍ୟ ଅନୁଭୂତ ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ଅନ୍ୟାୟ ଆଚରଣ କରୁଥିବା ଅସଚ୍ଚରିତ୍ର ବ୍ୟକ୍ତି ଯଥାର୍ଥରେ ଜଣେ ନୀତିବିକାରଗ୍ରସ୍ତ ରୋଗୀଭଳି । ତେଣୁ ଶାରୀରିକ ରୋଗଗ୍ରସ୍ତ ବ୍ୟକ୍ତିପରି ତାହାର ଚିକିତ୍ସା ବିଧାନ ହେବା ଉଚିତ ।

ସର୍ବପ୍ରଥମେ କେତେ ପ୍ରକାର ସୁସ୍ଥ ଚରିତ୍ରର ବ୍ୟକ୍ତି ଅଛନ୍ତି ତାହା ଅନୁଭୂତ ସାହାଯ୍ୟରେ ସ୍ଥିରୀକୃତ ହେବା ଆବଶ୍ୟକ । ତତ୍ପରେ ଚିକିତ୍ସକ ଯେପରି ଶରୀରତତ୍ତ୍ୱର ଜ୍ଞାନ ଉପରେ ନିର୍ଭର କରି ସୁସ୍ଥ ଶରୀରର ପ୍ରକାର-ଭେଦ ବିଷୟରେ ଜ୍ଞାନ ଅର୍ଜନ କରେ, ସେହିପରି ନୀତିଶାସ୍ତ୍ରବିତ୍ ପକ୍ଷରେ ମଧ୍ୟ ସ୍ତ୍ରୀ ପୁରୁଷ ଭେଦ, ଜଳବାୟୁର ବିଭିନ୍ନତା, ପରିସ୍ଥିତିର ପାର୍ଥକ୍ୟ ଇତ୍ୟାଦି ହେତୁ ସୁସ୍ଥ ଚରିତ୍ର ବ୍ୟକ୍ତିମାନଙ୍କ ସ୍ୱଭାବଗତ ପ୍ରକାରଭେଦ ବିଷୟରେ ଜ୍ଞାନ ଅର୍ଜନ କରିବା ଆବଶ୍ୟକ । ପରିଶେଷରେ ଚିକିତ୍ସକ ଯେପରି ସୁସ୍ଥଶରୀରର ଅସୁସ୍ଥ ହେବାର କାରଣ ନିର୍ଣ୍ଣୟ କରି ତାହାର ଚିକିତ୍ସାବିଧାନ କରେ, ସେହିପରି ସୁସ୍ଥଚରିତ୍ର ବ୍ୟକ୍ତି ଅସଚ୍ଚରିତ୍ର ହେବାର କାରଣ ନିର୍ଣ୍ଣୟ କରି ଅଭ୍ୟାସ ପରିବର୍ତ୍ତନ; ଉପଯୁକ୍ତ ପୁସ୍ତକର ଅଧ୍ୟୟନ ଇତ୍ୟାଦିର ପରାମର୍ଶ ଦେଇ ଅଥବା ନିନ୍ଦା ପ୍ରଶଂସା ଇତ୍ୟାଦିର ପ୍ରୟୋଗ କରି ତାହାକୁ

ସଚ୍ଚରିତ୍ର କରିବା ଉଚିତ । ସମସ୍ତ ରୋଗ ନିମିତ୍ତ ଗୋଟିଏ ପ୍ରକାର ଔଷଧ ବ୍ୟବସ୍ଥା କରି ଯେପରି ରୋଗ ନିରାକରଣ ସମ୍ଭବପର ନୁହେଁ, ସମସ୍ତ ପ୍ରକାର ଅସଚ୍ଚରିତ୍ର ବ୍ୟକ୍ତିଙ୍କୁ କେବଳ ଦଣ୍ଡର ମାଧ୍ୟମରେ ସେହିପରି ସଚ୍ଚରିତ୍ର କରାଯାଇ ନ ପାରେ । ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳନ କରି ଶରୀରକୁ ଯେପରି ପୁଷ୍ଟ, ସୁନ୍ଦର ଓ ବଳବାନ କରାଯାଇପାରେ, ନୈତିକତାର ନିୟମ ପାଳନ କରି ମନକୁ ସେହିପରି ବିଶୃଙ୍ଖଳବୁଦ୍ଧିଶୀଳ, ଭଦ୍ରବ୍ୟବହାର କ୍ଷମ ଓ କର୍ମପରାୟଣ କରାଯାଇପାରେ ।

ବେକନ୍ଙ୍କ ମତରେ, ଆତ୍ମରକ୍ଷା ହେଉ ବା ସାମାଜିକ ଉନ୍ନତି ହେଉ ପ୍ରବୃତ୍ତିର ତୃପ୍ତି ହେଉ ବା ନିବୃତ୍ତିର ନିପୀଡ଼ନ ହେଉ, ସମସ୍ତ କ୍ଷେତ୍ରରେ ଅତିରିକ୍ତତା ପରିହାର୍ଯ୍ୟ । ମାନବିକତାରେ ସମସ୍ତ ଆକାଙ୍‌କ୍ଷାର ସ୍ଥାନ ରହିଛି । ତେଣୁ କୌଣସିଟିକୁ ଅଯଥା ପ୍ରାଧାନ୍ୟ ଦେବା ବା ସମ୍ପୂର୍ଣ୍ଣ ଉପେକ୍ଷା କରିବା ଦ୍ୱାରା ମନୁଷ୍ୟ ପରିପୂର୍ଣ୍ଣତା ଲାଭ କରି ନ ପାରେ ।

ନୀତିଶାସ୍ତ୍ର କେବଳ ବୈକ୍ତିକ ଉନ୍ନତିରେ ପର୍ଯ୍ୟବସିତ ନ ରହି ସାମାଜିକ ଉନ୍ନତିର ମଧ୍ୟ ବିଧାନ କରିବା ଆବଶ୍ୟକ । ମନୁଷ୍ୟ କେବଳ ନିଜ ପାଇଁ ବଞ୍ଚି ରହେ ନାହିଁ ପର ପାଇଁ ମଧ୍ୟ ବଞ୍ଚେ । ତେଣୁ ମନୁଷ୍ୟ ଜୀବନରେ ଉଭୟ ଆତ୍ମୋନ୍ନତି ଓ ସାମାଜିକ ଉନ୍ନତିର ସ୍ଥାନ ରହିଛି ବେକନ୍ଙ୍କ ମତରେ ପ୍ରାଚୀନ ନୀତିବାଦୀମାନେ ଚିନ୍ତାସର୍ବସ୍ୱ ଜୀବନକୁ ସର୍ବୋତ୍କୃଷ୍ଟ ବୋଲି ବିବେଚନା କରିବା ଦ୍ୱାରା ମନୁଷ୍ୟର ସ୍ୱାଭାବିକ କର୍ମ-ପ୍ରବୃତ୍ତି ବାଧା ପ୍ରାପ୍ତ ହେଉଥିଲା । ସର୍ବଦା ଆଧ୍ୟାତ୍ମିକ ଚିନ୍ତାରେ ନିମଜ୍ଜିତ ରହି ଦେଶ ଓ ଦଶ ପ୍ରତି କର୍ତ୍ତବ୍ୟବୋଧ ବିସ୍ମୃତ ହେବା କଦାପି ମନୁଷ୍ୟୋଚିତ କାର୍ଯ୍ୟ ହୋଇ ନ ପାରେ ।

ବେକନ୍ଙ୍କର ସନ୍ଦର୍ଭ ପୁସ୍ତକର ପରିସର ଅତି ବ୍ୟାପକ । ସେ ଏଥିରେ ଗୃହ ନିର୍ମାଣ, ଉଦ୍ୟାନ କର୍ମ ଇତ୍ୟାଦି ଠାରୁ ଆରମ୍ଭ କରି ସତ୍ୟ, ପ୍ରେମ, ବନ୍ଧୁତା, ନିରୀଶ୍ୱରବାଦ, ମୃତ୍ୟୁ ଇତ୍ୟାଦି ବିବିଧ ବିଷୟରେ ଆଲୋଚନା କରିଥିଲେ । ତେଣୁ ଏହି ପ୍ରବନ୍ଧମାନଙ୍କରୁ ବିବିଧ ପ୍ରସଙ୍ଗରେ

ବେକନଙ୍କର ମତାମତର ଏକ ସାମୂହିକ ଧାରଣା ଗଠନ କରି ଯାଇପାରେ ।

## ସତ୍ୟ

ସତ୍ୟ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ କେବଳ ସତ୍ୟ ଆବିଷ୍କାର କରିବା କଷ୍ଟକର ଓ ପରିଶ୍ରମସାପେକ୍ଷ ଏବଂ ଏହା ଆବିଷ୍କୃତ ହେଲେ ମନୁଷ୍ୟର ଚିନ୍ତା ବ୍ୟାହତ ହୁଏ ବୋଲି ଯେ ମିଥ୍ୟା ପ୍ରତି ଲୋକେ ଆସକ୍ତ ହୁଅନ୍ତି, ତାହା ନୁହେଁ । ମିଥ୍ୟା ବିକୃତ ହେଲେ ସୁଦ୍ଧା ତା ପ୍ରତି ଲୋକଙ୍କର ଗୋଟିଏ ସହଜାତ ଅନୁରକ୍ତି ଥାଏ । ସତ୍ୟ ସହିତ ମିଥ୍ୟାର ସମ୍ମିଶ୍ରଣ ସର୍ବଦା ଆନନ୍ଦଦାୟକ ହୋଇଥାଏ । ଯେଉଁ ମିଥ୍ୟା ମନ ଉପରେ ଭାସିଯାଏ, ତାହା କ୍ଷତିକାରକ ନୁହେଁ, ଯେଉଁ ମିଥ୍ୟା ମନ ମଧ୍ୟକୁ ପ୍ରବେଶ କରି ଆସ୍ଥାନ ଜମାଇ ରହିଯାଏ, ତାହାହିଁ କ୍ଷତିକାରକ ।

କିନ୍ତୁ ମନୁଷ୍ୟର ବିକୃତ ବିଚାର ଓ ଅନୁରକ୍ତିରେ ମିଥ୍ୟାର ସ୍ଥାନ ଯାହାହେଉ ନା କାହିଁକି ସତ୍ୟ ହିଁ କେବଳ ନିଜେ ନିଜର ବିଚାର କରେ ଏବଂ ଶିକ୍ଷାଦିଏ ଯେ ମନୁଷ୍ୟ ପ୍ରକୃତିର ସର୍ବୋଚ୍ଚ ଉତ୍ତମତା ହେଉଛି ସତ୍ୟର ପ୍ରଣୟାନୁରାଗ ବା ତାହାର ଅନୁସନ୍ଧିତ୍ସା, ସତ୍ୟର ପ୍ରାପ୍ତି ବା ତାହାର ଜ୍ଞାନ ଓ ସତ୍ୟର ସମ୍ଭୋଗ ବା ତହିଁରେ ଆସ୍ଥାସ୍ଥାପନ । ଆଚରଣରେ ସ୍ପଷ୍ଟତା ଓ ଶୁଦ୍ଧତା ହେଉଛି ମନୁଷ୍ୟ ପ୍ରକୃତିର ଗୌରବ । ମିଥ୍ୟାର ମିଶ୍ରଣ ହେଉଛି ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରାରେ ଅପଧାତୁ ମିଶ୍ରଣ ତୁଲ୍ୟ । ଏହାଦ୍ୱାରା ଧାତୁର କାର୍ଯ୍ୟକାରିତା ବୃଦ୍ଧି ପାଇପାରେ, କିନ୍ତୁ ମୂଲ୍ୟ ହ୍ରାସ ପାଏ ।

## ମୃତ୍ୟୁ

ମୃତ୍ୟୁ ସମ୍ବନ୍ଧରେ ବେକନ କହିଛନ୍ତି ଯେ ଶିଶୁମାନେ ଅନ୍ଧକାରକୁ ଯିବା ପାଇଁ ଯେପରି ଭୟ କରନ୍ତି, ବଡ଼ ମଣିଷମାନେ ମୃତ୍ୟୁକୁ ସେହିପରି

ଭୟ କରନ୍ତି । ମିଥ୍ୟାଗଳ୍ପଦ୍ୱାରା ଏହି ଉଭୟ ପ୍ରକାର ପ୍ରାକୃତିକ ଭୟର ବୃଦ୍ଧି ଘଟିଥାଏ । କିନ୍ତୁ ମୃତ୍ୟୁକୁ ପାପର ପ୍ରାୟଶ୍ଚିତ୍ତ ଏବଂ ପରଲୋକ ଗମନର ସରଣୀ ସ୍ୱରୂପ ବୋଲି ଗ୍ରହଣ କରି ଚିନ୍ତା କଲେ ତାହା ପବିତ୍ର ଓ ଧର୍ମ-ମୂଳକ ମନେ ହେବ । ଗୋଟିଏ ପ୍ରଚଳିତ ଉକ୍ତିକୁ ଉଦ୍ଧାର କରି ସେ କହିଥିଲେ ଯେ ମୃତ୍ୟୁ ଅପେକ୍ଷା ମୃତ୍ୟୁର ଆନୁଷଙ୍ଗିକ ବିଷୟ ଅଧିକ ଭୟଜାତ କରିଥାଏ । ମୃତ୍ୟୁକୁ ଗୋଟିଏ ଭୟଙ୍କର ଶତ୍ରୁ ବୋଲି ବିଗ୍ଣିବା ଯଥାର୍ଥ ନୁହେଁ । ମନୁଷ୍ୟ ମନର ସମସ୍ତ ଉତ୍ତେଜନା ମୃତ୍ୟୁକୁ ପରାଜିତ କରି ପାରନ୍ତି । ପ୍ରତିଶୋଧ ମୃତ୍ୟୁକୁ ଜୟ କରେ; ପ୍ରେମ ତାହାକୁ ତାଚ୍ଛଲ୍ୟ କରେ; ଗୌରବ ତାହାକୁ ଆଗ୍ରହ ସହିତ ଗ୍ରହଣ କରେ; ଦୁଃଖ ତାହାର ଆଶ୍ରୟ ନିଏ; ଭୟ ତାହିରେ ନିମଜ୍ଜିତ ରହେ; ଏପରିକି ସର୍ବାପେକ୍ଷା କୋମଳତମ ଉତ୍ତେଜନା ଅର୍ଥାତ୍ ଅନୁକମ୍ପା ମଧ୍ୟ ମୃତ୍ୟୁବରଣ କରିବାକୁ ପଶ୍ଚାଦ୍‌ପଦ ହୁଏନାହିଁ । ବୀରତ୍ୱ ପ୍ରଦର୍ଶନ ପାଇଁ ନୁହେଁ, ଅସହ୍ୟ ଯନ୍ତ୍ରଣାରୁ ମୁକ୍ତି ପାଇଁ ନୁହେଁ, କେବଳ ସମ ପ୍ରକାର କାର୍ଯ୍ୟର ପୁନରାବୃତ୍ତିଜନିତ କ୍ଳାନ୍ତିରୁ ନିଷ୍କୃତି ପାଇବାକୁ ମଧ୍ୟ ମନୁଷ୍ୟ ମୃତ୍ୟୁ ଆକାଙ୍କ୍ଷା କରିଥାଏ । ଆଗତପ୍ରାୟ ମୃତ୍ୟୁ ସମକ୍ଷରେ ମଧ୍ୟ ବହୁଲୋକଙ୍କ ପ୍ରଫୁଲ୍ଲତାରେ ପରିବର୍ତ୍ତନ ଘଟିନାହିଁ । ଜନ୍ମ ଓ ମୃତ୍ୟୁ ଉଭୟେ ପ୍ରାକୃତିକ ପରିବର୍ତ୍ତନ ମାତ୍ର ଏବଂ ଗୋଟିଏ କ୍ଷୁଦ୍ର ଶିଶୁ ପକ୍ଷରେ ଉଭୟର ଯନ୍ତ୍ରଣା ସମାନ । କୌଣସି ସାଧୁ ଉଦ୍ଦେଶ୍ୟରେ କାର୍ଯ୍ୟରତ ଥିବାବେଳେ ମୃତ୍ୟୁ ଘଟିଲେ ମୃତ୍ୟୁର ବିଭୀଷିକା ଜଣାପଡ଼େ ନାହିଁ ଏବଂ ସାଧୁ ଉଦ୍ଦେଶ୍ୟର ସାଧନ ତଥା ସତ୍‌କାର୍ଯ୍ୟର ପରିସମାପ୍ତି ପରେ ମୃତ୍ୟୁ ଘଟିଲେ ତାହା ଆନନ୍ଦଦାୟକ ହୋଇଥାଏ । ଏତଦ୍‌ବ୍ୟତୀତ ମୃତ୍ୟୁ ଯଶର ଦ୍ୱାରକୁ ଉନ୍ମୁକ୍ତ ଓ ବିଦ୍ୱେଷର ପଥକୁ ରୁଦ୍ଧ ମଧ୍ୟ କରିଥାଏ ।

## ଧର୍ମର ଏକତ୍ୱ

ଧର୍ମର ଏକତ୍ୱ ବିଷୟକ ପ୍ରବନ୍ଧରେ ବେକନ୍ ଧର୍ମକୁ ମନୁଷ୍ୟ ସମାଜର ମୁଖ୍ୟ ସହିତ ବିଧାୟକ ବୋଲି ବର୍ଣ୍ଣନା କରିଛନ୍ତି ଏବଂ ଏହାର ଆଭ୍ୟନ୍ତରୀଣ ଏକତା ସ୍ପୃହଣୀୟ ବୋଲି ମତ ପ୍ରଦାନ କରିଛନ୍ତି । ବିବଦମାନ ଧର୍ମୀୟ

କଦାପି ବିଧର୍ମୀ ଲୋକଙ୍କୁ ଧର୍ମ ପ୍ରତି ଆକୃଷ୍ଟ କରି ନ ପାରେ । ଶାନ୍ତିହିଁ ଅସୀମ ଆଶୀର୍ବାଦ । ଏହା ଧର୍ମବିଶ୍ୱାସକୁ ଦୃଢ଼ୀଭୂତ କରେ ଏବଂ ବଦାନ୍ୟତାକୁ ଜାଗ୍ରତ କରେ । କିନ୍ତୁ ମତଦ୍ୱୈଧ ଉଠିଥିବା କ୍ଷେତ୍ରରେ ଗୋଟିଏ ମଧ୍ୟବର୍ତ୍ତୀ ପନ୍ଥା ଅନୁସରଣ କରି ଶାନ୍ତି ସ୍ଥାପନର ପ୍ରଚେଷ୍ଟା କରିବା ବା ବଳ ପ୍ରୟୋଗ କରି ଏକତା ଆନୟନ କରିବା ଉତ୍କୃଷ୍ଟ ସମାଧାନ ନୁହେଁ । ଧର୍ମରେ ଯାହା ମୁଖ୍ୟ ଓ ଶାଶ୍ୱତ ତାହା ବିଶ୍ୱାସ ଉପରେ ପ୍ରତିଷ୍ଠିତ । ଏଠାରେ ମତାନୈକ୍ୟ ବା ଯୁକ୍ତିତର୍କର ସ୍ଥାନ ନାହିଁ, ଧର୍ମଗ୍ରନ୍ଥର ଉକ୍ତି ଦ୍ୱିଧାହୀନ ଭାବେ ଗ୍ରହଣୀୟ । ଧର୍ମରେ ଯାହା ଗୌଣ ତାହା ବିବିଧ ପ୍ରକାର ହେଲେ ବିଚଳିତ ହେବା ଅନାବଶ୍ୟକ । ଜ୍ଞାନହୀନ ବ୍ୟକ୍ତିମାନେ ଗୋଟିଏ ବିଷୟର ଦ୍ୱିରୂପ ଅଭିବ୍ୟକ୍ତିକୁ ନେଇ ଦ୍ୱନ୍ଦ୍ୱରେ ନିମଜ୍ଜିତ ରହନ୍ତି । ଜ୍ଞାନୀ ବ୍ୟକ୍ତି ଉଭୟର ଅର୍ଥ ଏକ ବୋଲି ବୁଝିପାରେ । ହୃଦୟର ଶୁଦ୍ଧତାହିଁ ଧର୍ମର ପ୍ରଧାନ ସାଧନ । ଶୁଦ୍ଧହୃଦୟ ଅଲଙ୍କ ମନୁଷ୍ୟର ବୁଦ୍ଧିବିଚ୍ୟୁତି ଉପରେ ଅନ୍ତର୍ଯାମୀ ଭଗବାନ ପ୍ରାଧାନ୍ୟ ଦିଅନ୍ତି ନାହିଁ ବୋଲି ଆମ୍ଭମାନଙ୍କର ହୃଦ୍‌ବୋଧ ହେବା ଆବଶ୍ୟକ । ଦୁଇ ପ୍ରକାରର ଅଲୀକ ଶାନ୍ତି ବା ଏକତା ମଧ୍ୟ କାମ୍ୟ ନୁହେଁ । ଗୋଟିଏ ଅଜ୍ଞାନାନ୍ଧକାର ଉପରେ ପ୍ରତିଷ୍ଠିତ; ଅନ୍ଧକାରରେ ବର୍ଣ୍ଣବିଭେଦ ନ ରହିବା ସ୍ୱାଭାବିକ । ଅନ୍ୟଟି ମୌଳିକତାରେ ବିରୋଧିତାର ସହୋପସ୍ଥିତି ସ୍ୱୀକାର କରେ; କିନ୍ତୁ ସତ୍ୟ ଓ ମିଥ୍ୟାର ଏକତ୍ର ସମାବେଶ ଅକଳ୍ପନୀୟ ।

ବେକନ୍‌ଙ୍କ ମତରେ ଧର୍ମରେ ଏକତା ଆନୟନ ନିମିତ୍ତ ମନୁଷ୍ୟର ସହୃଦୟତା ବା ସାମାଜିକତାର ନିୟମ ମୂଳରେ କୁଠାରାଘାତ କରିବା ବାଞ୍ଛନୀୟ ନୁହେଁ । ଖ୍ରୀଷ୍ଟିୟାନ୍ ସମାଜରେ ଦୁଇଟି ଅସ୍ତ୍ର ପ୍ରୟୋଗ କରି ଯାଇପାରେ, ଗୋଟିଏ ଆଧ୍ୟାତ୍ମିକ ଏବଂ ଅନ୍ୟଟି ଭୌତିକ । ଧର୍ମ ସଂସ୍ଥାପନରେ ଉଭୟର ଯଥାଯଥ ସ୍ଥାନ ରହିଛି । କିନ୍ତୁ ତୃତୀୟ ଅସ୍ତ୍ର ଉତ୍ତୋଳନ କରିବା ଅନୁଚିତ । ତାହା ହେଉଛି ଧର୍ମ ସମ୍ପ୍ରସାରଣ ନିମିତ୍ତ ଯୁଦ୍ଧର ଅବଲମ୍ବନ ବା ବିବେକର ଦମନ ନିମିତ୍ତ ରକ୍ତାକ୍ତ ଉତ୍ପୀଡ଼ନ । ଧର୍ମରକ୍ଷା ନିମିତ୍ତ ଭୌତିକ ଅସ୍ତ୍ର ଅତି ସତର୍କତାର ସହିତ ଉତ୍ତୋଳନ କରିବା ଉଚିତ । ତେଣୁ ସାଧାରଣ ବ୍ୟକ୍ତିଙ୍କ ହସ୍ତରେ ଅସି ସମର୍ପଣ କରି ଧର୍ମରକ୍ଷାର ଦାୟିତ୍ୱ

ଦେବା ଏକ ଉଦ୍ଭଟ ବିଷୟ । ଶୟତାନ ଯଦି କହେ 'ମୁଁ ଊର୍ଦ୍ଧ୍ୱଗମନ କରିବି ଏବଂ ଈଶ୍ୱରଙ୍କ ତୁଲ୍ୟ ହେବି' ତାହା ଈଶ୍ୱରଙ୍କର ନିନ୍ଦାସୂଚକ; କିନ୍ତୁ ତହିଁରୁ ଆହୁରି ଅଧିକ ଈଶ୍ୱରଙ୍କର ନିନ୍ଦାସୂଚକ ହେଉଛି ଈଶ୍ୱରଙ୍କ ମୁଖାପିନ୍ଧି 'ମୁଁ ଅବତରଣ କରିବି ଏବଂ ଶୟତାନ ତୁଲ୍ୟ ହେବି' ବୋଲି କହିବା ।

## ପ୍ରତିଶୋଧ

ପ୍ରତିଶୋଧ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ ଏହା ଏକ ବନ୍ୟ ଓ ଅସଭ୍ୟ ଧରଣର ନ୍ୟାୟ । ମନୁଷ୍ୟର ପ୍ରକୃତି ଯେତିକ ଏହା ଦ୍ୱାରା ଅନୁପ୍ରାଣିତ ହୁଏ, ନିୟମ କାନୁନ୍ ସେତିକ ଏହାର ଉଚ୍ଛେଦ ବିଧାନ କରିବା ଉଚିତ, କାରଣ ପ୍ରଥମ ଦୋଷଦ୍ୱାରା ନିୟମର ଅବମାନନା ତ କରାଯାଇ ଥାଏ, କିନ୍ତୁ ସେହି ଦୋଷର ପ୍ରତିଶୋଧ ନେବାଦ୍ୱାରା କାନୁନ୍‌ର କାର୍ଯ୍ୟକାରିତା ସଂପୂର୍ଣ୍ଣ ବିନଷ୍ଟ ହୋଇଯାଏ । ପ୍ରତିଶୋଧ ନେବା ଦ୍ୱାରା ମନୁଷ୍ୟ ତାହାର ଶତ୍ରୁ ସହିତ ସମାନ ହୋଇଯାଏ; କିନ୍ତୁ ତହିଁରୁ ସେ ବିରତ ହେଲେ, ଶତ୍ରୁଠାରୁ ଉଚ୍ଚତର ହୋଇ ରହେ । ଯାହା ଅତୀତ, ତାହା ଗତ ଓ ଅପରିବର୍ତ୍ତନୀୟ ଏବଂ ବିଜ୍ଞବ୍ୟକ୍ତିମାନଙ୍କର ଉପସ୍ଥିତ ତଥା ଆଗତ ପ୍ରାୟ ବିଷୟରେ ଅନେକ କିଛି କରିବାକୁ ଥାଏ । ତେଣୁ ଗତ ବିଷୟରେ ବୃଥା ପରିଶ୍ରମ ଓ ଦୁଃଖ କରିବାକୁ ସେମାନେ ପସନ୍ଦ କରନ୍ତି ନାହିଁ ।

ଜଣେ ନିଜର ଲାଭ, ଆନନ୍ଦ ବା ସମ୍ମାନ ପାଇଁ ଅନ୍ୟର କ୍ଷତି କରେ । ତେଣୁ ଅନ୍ୟଲୋକ ଅପେକ୍ଷା ସେ ନିଜକୁ ବେଶୀ ସୁଖ ପାଏ ବୋଲି ତା ଉପରେ ରାଗିବାର କଣ ଅଛି ? ଏବଂ ଜଣେ କେବଳ ତାର ପ୍ରକୃତି ଦୋଷରୁ ଯଦି ଅନ୍ୟର କ୍ଷତି କରେ ତେବେ ସୁଦ୍ଧା କରିବାର କଣ ଅଛି ? କାରଣ ସେ କଣ୍ଟକ ତୁଲ୍ୟ । କଣ୍ଟକର ଫୋଡ଼ିବା ଓ ଘର୍ଷିବା ବ୍ୟତୀତ ଅନ୍ୟ କିଛି କରି ପାରିବାର ସାମର୍ଥ୍ୟ ହିଁ ନ ଥାଏ ।

## ଦୁର୍ଦ୍ଦଶା

ଦୁର୍ଦ୍ଦଶା ସମ୍ବନ୍ଧରେ କହିବାକୁ ଯାଇ ବେକନ୍ ମତ ଦେଇଛନ୍ତି ଯେ ସୁଦଶା ଅପେକ୍ଷା ଦୁର୍ଦ୍ଦଶାରେ ହିଁ ଅଧିକତର ଭାବେ ଅଲୌକିକ କର୍ମ ସମ୍ପାଦନ କରାଯାଇପାରେ । ସୁଦଶାରେ ସଦ୍‌ଗୁଣ ହେଉଛି ସଂଯମ; ଦୁର୍ଦ୍ଦଶାରେ ସଦ୍‌ଗୁଣ ହେଉଛି ସହନଶୀଳତା । ସୁଦଶା ଭୟ ବା ବିତୃଷ୍ଣାରୁ ରହିତ ନୁହେଁ କି ଦୁର୍ଦ୍ଦଶା ଆଶା-ଆରାମରୁ ରହିତ ନୁହେଁ । ସୁବାସିତ ବସ୍ତୁ ମଥିତ ହେଲେ ଯେପରି ଅଧିକତର ସୁବାସ ବିତରଣ କରେ, ସେହିପରି ସଦ୍‌ଗୁଣ ଦୁର୍ଦ୍ଦଶା ସମୟରେ ହିଁ ଅଧିକ ବିକଶିତ ହୋଇଥାଏ । ଦୁର୍ଗୁଣ ଆବିଷ୍କାର କରିବା ନିମିତ୍ତ ସୁଦଶାହିଁ ଅନୁକୂଳ ସମୟ ଏବଂ ସଦ୍‌ଗୁଣ ଆବିଷ୍କାର କରିବା ନିମିତ୍ତ ଦୁର୍ଦ୍ଦଶାହିଁ ଅନୁକୂଳ ସମୟ ।

## ସନ୍ତାନ

ସନ୍ତାନମାନଙ୍କ ସମ୍ବନ୍ଧରେ ବେକନ୍‌ଙ୍କ ମତ ହେଉଛି ଯେ ସେମାନେ ପରିଶ୍ରମକୁ ମଧୁର କରନ୍ତି, କିନ୍ତୁ ଦୁର୍ଭାଗ୍ୟକୁ ତିକ୍ତ କରନ୍ତି । ସେମାନେ ଉଦ୍‌ବେଗ ବୃଦ୍ଧି କରନ୍ତି, କିନ୍ତୁ ମୃତ୍ୟୁସଚେତନତାକୁ ହ୍ରାସ କରନ୍ତି । ସନ୍ତାନହୀନ ବ୍ୟକ୍ତିମାନେହିଁ ଉଚ୍ଚକୋଟିର କାର୍ଯ୍ୟ ଓ ଅମର କୀର୍ତ୍ତିର ଭିତ୍ତି ସ୍ଥାପନ କରିଥାନ୍ତି । ଦୈହିକ ପ୍ରତିରୂପର ଅବିଦ୍ୟମାନତା ହେତୁ ମାନସିକ ଧାରଣାକୁ ରୂପଦେବା ନିମିତ୍ତ ସେମାନେ ବ୍ୟାକୁଳ । ତେଣୁ ଯେଉଁମାନଙ୍କର ନିଜର ଭବିଷ୍ୟତ ବଂଶଧର ନାହିଁ, ସେହିମାନେହିଁ ଭବିଷ୍ୟତ ବଂଶଧରଙ୍କ ନିମିତ୍ତ ଅଧିକତର ଭାବେ ଉଦ୍‌ବିଗ୍ନ ।

## ବିବାହିତ ଓ ଅବିବାହିତ ଜୀବନ

ବିବାହିତ ଓ ଅବିବାହିତ ଜୀବନ ସମ୍ବନ୍ଧରେ ବେକନ୍‌ଙ୍କ ମନ୍ତବ୍ୟ ହେଉଛି ଯେ ପତ୍ନୀ ଓ ସନ୍ତାନ ଥିବା ବ୍ୟକ୍ତି ଭାଗ୍ୟବାନ୍, କାରଣ ସେ କୌଣସି ଦୁଃସାହସିକ କାର୍ଯ୍ୟ କରି ପାରେନାହିଁ । ଅବିବାହିତ ଓ ସନ୍ତାନହୀନ

ବ୍ୟକ୍ତିମାନେହିଁ ସମାଜରେ ବିଶିଷ୍ଟ କର୍ମ କରିପାରନ୍ତି । ଅବିବାହିତ ବ୍ୟକ୍ତିମାନେ ଉତ୍କୃଷ୍ଟ ବନ୍ଧୁ, ଉତ୍କୃଷ୍ଟ ପ୍ରଭୁ ଓ ଉତ୍କୃଷ୍ଟ ଭୃତ୍ୟ ହୋଇ ପାରନ୍ତି । କିନ୍ତୁ ସେମାନେ ଉତ୍କୃଷ୍ଟ ପ୍ରଜା ନୁହନ୍ତି, କାରଣ ଦେଶତ୍ୟାଗ କରି ଯିବାପାଇଁ ସେମାନଙ୍କର ବିଶେଷ ବାଧା ନ ଥାଏ । ପତ୍ନୀ ଓ ସନ୍ତାନ ସନ୍ତତି ମନୁଷ୍ୟ ଜୀବନକୁ ଶୃଙ୍ଖଳିତ କରନ୍ତି । ଅବିବାହିତ ବ୍ୟକ୍ତିମାନେ ଅଧିକ ଦାନଶୀଳ ହୋଇ ପାରନ୍ତି, କିନ୍ତୁ ଅଧିକ ନିଷ୍ଠୁର ଓ କଠୋର-ହୃଦୟ ମଧ୍ୟ ହୋଇ ପାରନ୍ତି, କାରଣ କୋମଳତା ପ୍ରଦର୍ଶନ କରିବାର ସୁଯୋଗ ଓ ଆବଶ୍ୟକତା ସେମାନଙ୍କର ବିଶେଷ ନ ଥାଏ । ଗମ୍ଭୀରପ୍ରକୃତି ଓ ରକ୍ଷଣଶୀଳ ବ୍ୟକ୍ତିମାନେ ସ୍ଥିର ଅଚଞ୍ଚଳ, ତେଣୁ ସେମାନେ ସାଧାରଣତଃ ପ୍ରେମିକ-ପତି ହୁଅନ୍ତି । ସଚ୍ଚରିତା ନାରୀମାନେ ପ୍ରାୟଶଃ ଗର୍ବିଣୀ ଓ ସାହସିକା ହୋଇଥାନ୍ତି । ସ୍ୱାମୀଙ୍କୁ ଜ୍ଞାନୀ ମନେ କରୁଥିବା ନାରୀମାନେ ସଚ୍ଚରିତା ଓ ଆଜ୍ଞାବହ ହୋଇଥାନ୍ତି, କିନ୍ତୁ ସ୍ୱାମୀ ପ୍ରେମପରାୟଣ ବୋଲି ଜାଣିଲେ ଏଥିରେ ବ୍ୟତିକ୍ରମ ଘଟେ । ପତ୍ନୀ ହେଉଛି ଯୁବକର ପ୍ରିୟା, ପୌଢ଼ର ସହଚରୀ ଏବଂ ବୃଦ୍ଧର ଶୁଶ୍ରୂଷାକାରିଣୀ ।

## ଈର୍ଷା

ଈର୍ଷା ସମ୍ବନ୍ଧୀୟ ପ୍ରବନ୍ଧରେ ବେକନ୍ ଈର୍ଷା ଓ ପ୍ରେମ ଉଭୟେ ସର୍ବାପେକ୍ଷା ଅଧିକ ଉନ୍ମାଦକ ବୋଲି ବର୍ଣ୍ଣନା କରିଛନ୍ତି । ଯେଉଁ ଲୋକର ସଦ୍‌ଗୁଣ ନାହିଁ ସେ ଅନ୍ୟର ସଦ୍‌ଗୁଣ ପାଇଁ ସର୍ବଦା ଈର୍ଷାନ୍ୱିତ ହୁଏ । କାରଣ ନିଜର ମଙ୍ଗଳ ବା ପରର ଅମଙ୍ଗଳ ଚିନ୍ତା ମନୁଷ୍ୟର ମନକୁ ଖାଦ୍ୟ ଯୋଗାଏ ଓ ଆନନ୍ଦ ଦିଏ । ତେଣୁ ଯଦି କାହାରି ଗୋଟିକର ଅଭାବ ଘଟେ, ସେ ଅନ୍ୟଟିର ଆଶ୍ରୟ ନିଏ । ଯେ ନିଜେ ଅନ୍ୟ ପରି ଗୁଣବାନ୍ ହେବାର ଆଶା ହରାଏ, ସେ ଅନ୍ୟର କୁତ୍ସାରଟନା କରି ତାହାକୁ ନିଜର ସମତୁଲ୍ୟ କରିବାକୁ ଚେଷ୍ଟା କରେ । ଯେଉଁମାନେ ନିଜକାର୍ଯ୍ୟରେ ସର୍ବଦା ବ୍ୟସ୍ତ ସେମାନେ ପରକୁ ଈର୍ଷା କରିବାକୁ ସମୟ ପାଆନ୍ତି ନାହିଁ । କିନ୍ତୁ ଯେଉଁମାନେ ପରବିଷୟରେ ଜାଣିବାକୁ ଆଗ୍ରହୀ, ସେହିମାନେହିଁ

ସାଧାରଣତଃ ଈର୍ଷାନ୍ୱିତ ହୋଇଥାନ୍ତି । ସମ୍ଭ୍ରାନ୍ତ ବଂଶୀୟ ଲୋକେ ଉଦୟମାନ ବ୍ୟକ୍ତିମାନଙ୍କ ପ୍ରତି ଈର୍ଷାନ୍ୱିତ ହୁଅନ୍ତି, କାରଣ ଅନ୍ୟର ଉନ୍ନତି ଦ୍ୱାରା ନିଜର ଅବନତିର ଭ୍ରମପ୍ରତ୍ୟକ୍ଷ ଜାତହୁଏ । ପଙ୍ଗୁ, ନପୁଂସକ, ବୃଦ୍ଧ, ଜାରଜ, ବିପଦ ଓ ଦୁର୍ଭାଗ୍ୟ ଭୋଗିଥିବା ବ୍ୟକ୍ତି, ଅନେକ ବିଷୟରେ ପାରଦର୍ଶିତା ଲାଭ କରିବାକୁ ଅଭିଳାଷ କରୁଥିବା ବ୍ୟକ୍ତି ସାଧାରଣତଃ ହିଂସୁକ ହୋଇ ଥାନ୍ତି । ସମବଂଶୀୟ, ସହକର୍ମୀ ଏବଂ ଏକତ୍ର ପାଳିତ ବ୍ୟକ୍ତିମାନେ ପରସ୍ପର ସମକକ୍ଷ ବ୍ୟକ୍ତିଙ୍କ ଉନ୍ନତି ହେତୁ ଈର୍ଷାପରାୟଣ ହୋଇଥାନ୍ତି ।

ଅତୁଳନୀୟ ଗୁଣଯୁକ୍ତ ବ୍ୟକ୍ତି, ଅତିସମ୍ଭ୍ରାନ୍ତ ବ୍ୟକ୍ତି, ଅତି କଷ୍ଟରେ ସୌଭାଗ୍ୟ ଲାଭ କରିଥିବା ବ୍ୟକ୍ତିମାନଙ୍କ ଉନ୍ନତିରେ କେହି ଈର୍ଷା କରନ୍ତି ନାହିଁ । କିନ୍ତୁ ହଠାତ୍ ସୌଭାଗ୍ୟ ଲାଭ କରିଥିବା ବ୍ୟକ୍ତି ଏବଂ ଗର୍ବୀ ତଥା ଉଦ୍ଧତ ପ୍ରକୃତିର ବ୍ୟକ୍ତିଙ୍କ ଉନ୍ନତି ସମସ୍ତଙ୍କର ଚକ୍ଷୁଶୂଳ ହୋଇଥାଏ ।

ବ୍ୟକ୍ତିଗତ ଈର୍ଷାର କୌଣସି ସୁଫଳ ନାହିଁ । ସାଧାରଣ ଜନତାର ଈର୍ଷାର ନାମାନ୍ତର ହେଉଛି ଅସନ୍ତୋଷ । ଏହା ରାଷ୍ଟ୍ରର ଉଚ୍ଚପଦରେ ଅବସ୍ଥାପିତ ବ୍ୟକ୍ତିମାନଙ୍କର ବିରୁଦ୍ଧରେ ପ୍ରକାଶ ପାଇଥାଏ ଏବଂ ସେମାନଙ୍କୁ ସଂଯତ ରଖିବାରେ ସାହାଯ୍ୟ କରିଥାଏ ।

ଅନ୍ୟାନ୍ୟ ଉତ୍ତେଜନାର ପ୍ରଭାବ ସାମୟିକ, କିନ୍ତୁ ଈର୍ଷାର ପ୍ରଭାବ ନିରବଚ୍ଛିନ୍ନ, ବିରକ୍ତିକର ଏବଂ ପ୍ରେମଭକ୍ତି ମ୍ଳାନକାରିକ । ଉତ୍ତେଜନା ମାନଙ୍କ ମଧ୍ୟରେ ଏହା ସର୍ବାପେକ୍ଷା ନୀଚ ଓ ଭ୍ରଷ୍ଟାବସ୍ଥା ।

## ପ୍ରେମ

ବେକନଙ୍କ ମତରେ ଜୀବନରେ ପ୍ରେମ କ୍ଷତିକାରକ ହୋଇଥାଏ । ଏହା ସମସ୍ତ ସମୟରେ ମନୁଷ୍ୟକୁ ବିମୋହିତ କରି ଧ୍ୱଂସର ପଥକୁ ଆକର୍ଷଣ କରି ନିଏ ଓ ସମୟ ସମୟରେ କ୍ରୋଧୋନ୍ମତ୍ତ କରିଦିଏ । କୌଣସି ଯୁଗର ମହାନ୍ ଓ ଯୋଗ୍ୟବ୍ୟକ୍ତିମାନେ ପ୍ରେମପାଗଳ ହୁଅନ୍ତି ନାହିଁ । ମହାନୁଭବତା ଓ ମହାନ୍ କାର୍ଯ୍ୟ ପ୍ରେମର ଦୁର୍ବଳତାଠାରୁ ମନୁଷ୍ୟକୁ ଦୂରରେ ରଖେ ।

ପ୍ରେମର ଆଧିକ୍ୟ ପ୍ରେମପାତ୍ରର ଯଥାର୍ଥ ପ୍ରକୃତି ଓ ମୂଲ୍ୟ ନିରୂପଣରେ ବାଧା ସୃଷ୍ଟି କରେ । ପ୍ରେମର ଭାଷା ଅତିରଞ୍ଜିତ । ଆତ୍ମାଭିମାନୀ ବ୍ୟକ୍ତିର ଆତ୍ମବଡ଼ିମା ଅପେକ୍ଷା ପ୍ରେମିକର ନିଜ ପ୍ରେମାସ୍ପଦ ବ୍ୟକ୍ତି ସମ୍ପର୍କରେ ଧାରଣା ଅଧିକ ଅସଙ୍ଗତ । ଧନ ଓ ଜ୍ଞାନକୁ ମଧ୍ୟ ପ୍ରେମ କ୍ଷୁଣ୍ଣ କରେ । କିନ୍ତୁ ପ୍ରତିଦାନମୂଳକ ନ ହେଲେ ଏହା ଆନ୍ତରିକ ଘୃଣାର ଉଦ୍ରେକ କରେ । ଦୁର୍ବଳ ମୁହୂର୍ତ୍ତ ଅର୍ଥାତ୍ ଅତ୍ୟଧିକ ବିତ୍ତଶାଳୀ ଅଥବା ବିପଦଗ୍ରସ୍ତ ଅବସ୍ଥାରେହିଁ ଏହା ତୀବ୍ର ଆକାର ଧାରଣ କରେ ଏବଂ ମନୁଷ୍ୟର ବୁଦ୍ଧି ଲୋପ କରିଦିଏ । ପ୍ରେମକୁ ସ୍ୱୀକାର କରିଗଲେ ମଧ୍ୟ ତାହାକୁ ସୀମା ମଧ୍ୟରେ ଏବଂ ଜୀବନର ଗୁରୁତର କାର୍ଯ୍ୟକଳାପଠାରୁ ବିଚ୍ଛିନ୍ନ କରି ରଖିବା ଉଚିତ; କାରଣ ପ୍ରେମ ଥରେ ହସ୍ତକ୍ଷେପ କରିବାର ସୁବିଧା ଲାଭ କଲେ ମନୁଷ୍ୟର ସୌଭାଗ୍ୟରେ ବାଧା ସୃଷ୍ଟି କରିଥାଏ ଏବଂ ମନୁଷ୍ୟ ନିଜର ଲକ୍ଷ୍ୟସିଦ୍ଧିରେ ଆନ୍ତରିକତା ରକ୍ଷା କରି ପାରେନାହିଁ ।

ଅନ୍ୟ ପ୍ରତି ଆକୃଷ୍ଟ ଓ ଅନୁରକ୍ତ ହେବା ମନୁଷ୍ୟର ପ୍ରକୃତିଗତ । ପ୍ରେମ ଏକ ବା ଅଳ୍ପ-କେତେକ-ବ୍ୟକ୍ତି-ଅଭିମୁଖୀ ନ ହେଲେ ସାର୍ବଜନୀନ ହୁଏ ଏବଂ ମନୁଷ୍ୟକୁ ଦୟାଦ୍ର୍ର ଓ ବଦାନ୍ୟ କରେ । ବିବାହ ମୂଳକ ପ୍ରେମ ମନୁଷ୍ୟ ସମାଜର ସୃଷ୍ଟି କରେ; ବନ୍ଧୁତାମୂଳକ ପ୍ରେମ ତାହାକୁ ବିଶୁଦ୍ଧ କରେ; କିନ୍ତୁ ଅସଂଯତ ପ୍ରେମ ତାହାକୁ ଦୂଷିତ ଓ ନିମ୍ନଗାମୀ କରେ ।

## ଉଚ୍ଚପଦ

ଉଚ୍ଚପଦରେ ଅଧିଷ୍ଠିତ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ ସେମାନେ ତିନୋଟି ସ୍ୱାମୀଙ୍କ ଭୃତ୍ୟ-ରାଜା ବା ରାଷ୍ଟ୍ରର, ଯଶର ଏବଂ କାର୍ଯ୍ୟର । ତେଣୁ ସେମାନଙ୍କର ବ୍ୟକ୍ତିଗତ, କର୍ମସମ୍ପୃକ୍ତ ଓ ସମୟ ସମ୍ବନ୍ଧୀୟ କୌଣସି ସ୍ୱାଧୀନତା ନ ଥାଏ । ଆଧିପତ୍ୟ ପାଇଁ ସ୍ୱାଧୀନତା ହରାଇବା ବା ଅନ୍ୟ ଉପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ନିଜ ଉପରୁ ପ୍ରଭୁତ୍ୱ ହରାଇବାକୁ ଇଚ୍ଛା କରିବା ଏକ ବିଚିତ୍ର ଅଭିଳାଷ । ଉଚ୍ଚପଦ ଲାଭ କରିବା

କଷ୍ଟସାଧ୍ୟ; ପୁଣି ଏଠାରେ କଷ୍ଟ ଦ୍ୱାରା ଅଧିକତର କଷ୍ଟ ଲାଭ ହୋଇଥାଏ । ଉଚ୍ଚପଦ ଲାଭ କରିଥିବା ବ୍ୟକ୍ତି ନିଜକୁ ସୁଖୀ ବୋଲି ଭାବିବାକୁ ଅନ୍ୟ ମାନଙ୍କର ମତ ଗ୍ରହଣ କରିବାର ଆବଶ୍ୟକତା ପଡ଼େ । କାରଣ ସେମାନେ ନିଜ ଅନୁଭୂତିଦ୍ୱାରା ବିଚାର କଲେ ସୁଖ ଖୋଜି ପାଆନ୍ତି ନାହିଁ । ଉଚ୍ଚ ପଦରୁ ଭଲ ଓ ମନ୍ଦ ଉଭୟ ପ୍ରକାର କାର୍ଯ୍ୟ କରି ପାରିବାର ସୁଯୋଗ ମିଳିଥାଏ । ଉଚ୍ଚପଦ ପାଇଥିବା ବ୍ୟକ୍ତି ଚାରୋଟି ମୁଖ୍ୟ ଦୋଷ ପରିହାର କରିବା ଉଚିତ । ସେଗୁଡ଼ିକ ହେଉଛି କାଳକ୍ଷେପଣ, ଦୁର୍ନୀତି ଅବଲମ୍ବନ, କର୍କଶ ବ୍ୟବହାର ଓ ସୁବିଧାର ଅପପ୍ରୟୋଗ ।

## ସାହସିକତା

ସାହସିକତା ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରିବାକୁ ଯାଇ ବେକନ୍ କହିଛନ୍ତି ଯେ ଥରେ ଡେମୋସ୍ଥିନିସ୍(୧)ଙ୍କୁ ପ୍ରଶ୍ନ ପଚରା ଯାଇଥିଲା—ବକ୍ତାର ମୁଖ୍ୟ ଭୂମିକା କଣ ? ସେ ଉତ୍ତର ଦେଇଥିଲେ—କର୍ମ କୌଶଳ । ତାପରେ କଣ ? କର୍ମ କୌଶଳ । ତା ପରେ ପୁଣି କଣ ? କର୍ମକୌଶଳ । ଠିକ୍ ସେହିପରି ବେସାମରିକ କାର୍ଯ୍ୟକଳାପରେ ମଧ୍ୟ ସାହସିକତାର ସ୍ଥାନ ରହିଛି ଏଠାରେ ସାହସିକତାହିଁ ପ୍ରଥମ ତଥା ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିବ । ସାହସିକତାହିଁ ଭିଜ୍ଞବ୍ୟକ୍ତିମାନଙ୍କ ଦୁର୍ବଳ ମୁହୂର୍ତ୍ତର ସହାୟକ । ସାହସୀ ବ୍ୟକ୍ତିମାନେ ଅତି ବିପଜ୍ଜନକ କାର୍ଯ୍ୟ କରି ପାରନ୍ତି ଏବଂ ଅକୃତକାର୍ଯ୍ୟ ହେଲେ ମଧ୍ୟ ତାହାକୁ ତୁଚ୍ଛ ମନେ କରି କର୍ମାନ୍ତରରେ ମନୋନିବେଶ କରନ୍ତି ।

ସାହସିକତା ସହିତ ଅସଙ୍ଗତ ଓ ହାସ୍ୟାସ୍ପଦ ହେବା ସର୍ବଦା ଜଡ଼ିତ । ଅନ୍ଧତ୍ୱ ମଧ୍ୟ ଏହାର ଗୁଣାନ୍ତର ; କାରଣ ଏହା ଅସୁବିଧା ବା ବିପଦ କିଛି ବିଚାର କରେ ନାହିଁ । ତେଣୁ ଏହା ଉପଦେଶ ଦୃଷ୍ଟିରୁ ମନ୍ଦ, କିନ୍ତୁ କାର୍ଯ୍ୟ-

(୧) Demosthenes (384-322 B. C.)

ନାଶକୀ ଶକ୍ତି ଲଭେ । ଉପଦେଶରେ ଅମତର ସମ୍ଭାବନା ସୃଷ୍ଟି । କିନ୍ତୁ ଅତି ସତର୍କ ଦାର୍ଶନିକ ହୋଇ ନ ଥିଲେ ତାହି ସମ୍ପାଦନ କାଳରେ ଅପରର ଆଶଙ୍କା ନଷ୍ଟ କରିବା ଅସମ୍ଭବଣୀୟ ।

## ଉତ୍ତମତା (୨)

ବେକନ 'ଉତ୍ତମତା' ଶବ୍ଦକୁ ଜନକଲ୍ୟାଣ ଅର୍ଥରେ ବ୍ୟବହାର କରିଛନ୍ତି । ମାନବିକତା ଶବ୍ଦଦ୍ୱାରା ଉତ୍ତମତାର ଅର୍ଥ ପ୍ରକାଶିତ ହୁଏନାହିଁ, କାରଣ ଏହା ଉତ୍ତମତାଠାରୁ ଲଘୁ । ଉତ୍ତମତା ହେଉଛି ଗୋଟିଏ ଅଭ୍ୟାସ ଏବଂ ଉତ୍ତମ ପଦ୍ଧତି ହେଉଛି ଗୋଟିଏ ପ୍ରବୃତ୍ତି । ଏହା ସମସ୍ତ ମାନସିକ ସଦ୍‌ଗୁଣ ଓ ଗୌରବ ମଧ୍ୟରେ ଶ୍ରେଷ୍ଠ । ଏହା ଦେବତ୍ୱସୂଚକ । ଉତ୍ତମତା ବିନା ମନୁଷ୍ୟ ସଦାବ୍ୟସ୍ତ, ଖଳ, ପାଷଣ୍ଡ ହୋଇଯିବ ଏବଂ କ୍ଷତିକାରକ କୀଟ ଠାରୁ କୌଣସି ପ୍ରକାରେ ଉନ୍ନ ବୋଲି ବିବେଚିତ ହେବ ନାହିଁ । ବଦାନ୍ୟତା ରୂପୀ ଉତ୍ତମତାରେ ଭ୍ରାନ୍ତି ଜାତ ହୋଇ ପାରେ, କିନ୍ତୁ ଆଧିକ୍ୟଗତ ତ୍ରୁଟି ହେବାର ସମ୍ଭାବନା ନାହିଁ । ଅତ୍ୟଧିକ ଶକ୍ତିର ଅଭିଳାଷ ଦେବଦୂତଙ୍କ ଅଧଃପତନର କାରଣ ହୋଇଥିଲା । ଅତ୍ୟଧିକ ଜ୍ଞାନର ଅଭିଳାଷ ମନୁଷ୍ୟର ଅଧଃପତନର କାରଣ ହୋଇଥିଲା କିନ୍ତୁ ବଦାନ୍ୟତାରେ ଆଧିକ୍ୟ ନାହିଁ । ଦେବଦୂତ ଅଥବା ମନୁଷ୍ୟ କେହି ଏଥିଯୋଗୁଁ ବିପଦଗ୍ରସ୍ତ ହେବାର ସମ୍ଭାବନା ନାହିଁ । ଉତ୍ତମ ହେବାର ପ୍ରବୃତ୍ତି ସାଧାରଣ ମନୁଷ୍ୟ-ପ୍ରକୃତିର ଅସ୍ଥି-ମଜ୍ଜାଗତ ଏବଂ ଏହା ମନୁଷ୍ୟର କଲ୍ୟାଣ-ଅଭିମୁଖୀ ନ ହେଲେ ଅନ୍ୟାନ୍ୟ ଜୀବମାନଙ୍କର କଲ୍ୟାଣ-ଅଭିମୁଖୀ ହୋଇଥାଏ । ଅବଶ୍ୟ ଉତ୍ତମତାର ଭ୍ରାନ୍ତି ବିଷୟରେ ସଚେତନ ରହିବା ଉଚିତ । ସମସ୍ତଙ୍କର ଶୁଭ କାମ୍ୟ, କିନ୍ତୁ ଅପାତ୍ରେ ଦାନ ଉଚିତ ନୁହେଁ । ଭଗବାନ୍ ବ୍ୟକ୍ତି ନିର୍ବିଶେଷରେ ସୂର୍ଯ୍ୟକିରଣ ଓ ବୃଷ୍ଟିର ବ୍ୟବସ୍ଥା କରନ୍ତି । କିନ୍ତୁ ସମସ୍ତଙ୍କ ଉପରେ ସମଭାବରେ ଧନ, ସମ୍ମାନ ତଥା ସଦ୍‌ଗୁଣ ବୃଷ୍ଟି କରନ୍ତି ନାହିଁ ।

---

(୨) Goodness

# ନିରୀଶ୍ୱର ବାଦ

ନିରୀଶ୍ୱରବାଦ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ, ସେ ବରଂ କିନମ୍ବଦନ୍ତୀର ସମସ୍ତ କାଳ୍ପନିକ ଗଳ୍ପରେ ଆସ୍ଥା ସ୍ଥାପନ କରି ପାରିବେ, କିନ୍ତୁ ଏହି ବିଶ୍ୱବ୍ରହ୍ମାଣ୍ଡରେ ମାନସିକ ଶକ୍ତି କାର୍ଯ୍ୟ କରୁନାହିଁ, ଏ କଥାରେ ବିଶ୍ୱାସ କରି ପାରିବେ ନାହିଁ । ଏଥି ନିମିତ୍ତ ଭଗବାନଙ୍କର ଅଲୌକିକ କାମର ଆବଶ୍ୟକତା ନାହିଁ । ତାଙ୍କର ସାଧାରଣ କାର୍ଯ୍ୟହିଁ ତାଙ୍କର ବିଶ୍ୱାସ ଜାତ କରାଇବା ନିମିତ୍ତ ଯଥେଷ୍ଟ । ଏହା ସତ୍ୟ ଯେ, ସ୍ୱଳ୍ପ ଦାର୍ଶନିକ-ଚିନ୍ତା ମନକୁ ନିରୀଶ୍ୱରବାଦ ଆଡ଼କୁ ଆକୃଷ୍ଟ କରିଥାଏ । କିନ୍ତୁ ଗମ୍ଭୀର ଦାର୍ଶନିକ-ଚିନ୍ତା ମନୁଷ୍ୟ ମନରେ ଧର୍ମଭାବର ସଞ୍ଚାର କରେ । ଗୌଣ କାରଣ ଗୁଡ଼ିକ ଚତୁର୍ଦ୍ଦିଗରେ ବିଚ୍ଛୁରିତ । ମନୁଷ୍ୟ ସେଗୁଡ଼ିକୁ ଦେଖି ସମସ୍ତ ସମୟରେ ସେମାନଙ୍କର ଆଶ୍ରୟ ନେଇ ଆଉ ଅଧିକ ଦୂରକୁ ଅଗ୍ରସର ହେବା ଅନାବଶ୍ୟକ ବୋଲି ମନେ କରିପାରେ । କିନ୍ତୁ ସେମାନେ ପରସ୍ପର ଜଡ଼ିତ, ସଂଶ୍ଳିଷ୍ଟ ଓ ସମ୍ବନ୍ଧୀକୃତ ହୋଇଥିବାର ଜ୍ଞାନଲାଭ କଲାପରେ ଭଗବତ୍ ସତ୍ତା ଆଡ଼କୁ ମନ ପ୍ରଧାବିତ ହେବା ଅନିବାର୍ଯ୍ୟ ହୋଇପଡ଼େ । ସର୍ବାପେକ୍ଷା ଅଧିକ ନିରୀଶ୍ୱରବାଦୀ ବୋଲି ସାବ୍ୟସ୍ତ ହେଉଥିବା ଲିଉସିପସ୍, ଡେମୋକ୍ରିଟସ୍ ଓ ଏପିକ୍ୟୁରସ୍ (୩) ସମ୍ପ୍ରଦାୟ ସର୍ବାପେକ୍ଷା ଅଧିକତର ଭାବେ ଧର୍ମତତ୍ତ୍ୱର ପ୍ରମାଣ ଯୋଗାଇଥାନ୍ତି । କାରଣ ଚାରୋଟି ପରିବର୍ତ୍ତନଶୀଳ ମୌଳିକ ପଦାର୍ଥ ଏବଂ ଏକ ଅପରିବର୍ତ୍ତନଶୀଳ ପଞ୍ଚମ ସତ୍ତା ଯେତେ ସୁସ୍ଥିରୂରୂପେ ଓ ଶାଶ୍ୱତ ଧାରାରେ ଉପସ୍ଥାପିତ ହୋଇଥିଲେ ମଧ୍ୟ ଦୈବୀଶକ୍ତିର ବିନା ନିୟନ୍ତ୍ରଣରେ ପରିଦୃଶ୍ୟମାନ ଶୃଙ୍ଖଳା ଓ ସୌନ୍ଦର୍ଯ୍ୟର ସୃଷ୍ଟି କରି ପାରନ୍ତି ବୋଲି ବିଶ୍ୱାସ କରିବା ସମ୍ଭବପର ନୁହେଁ । ଧର୍ମଶାସ୍ତ୍ରରେ ଉଲ୍ଲେଖ ରହିଛି—ନିର୍ବୋଧ ବ୍ୟକ୍ତି ହୃଦୟରେ କହେ ଭଗବାନ ନାହାନ୍ତି । କିନ୍ତୁ ସେ ହୃଦୟରେ ଭାବେ 'ଭଗବାନ ନାହାନ୍ତି' ଏ କଥାର ତ ଉଲ୍ଲେଖ ନାହିଁ ।

---

(୩) Leucippus, Democritus and Epicurus (342-270 B.C.)

ମୁହଁରେ ସେ ଯାହା କହୁ ନା କାହିଁକି, ଭଗବାନଙ୍କ ଅସ୍ତିତ୍ୱରେ ବିଶ୍ୱାସ ନ କରି ରହି ହେବ ନାହିଁ । ନିରୀଶ୍ୱରବାଦ ହେଉଛି ଓଷ୍ଠଗତ, ହୃଦୟଗତ ନୁହେଁ ।

ଧର୍ମମତରେ ବିଭେଦ, ଧର୍ମଯାଜକମାନଙ୍କ ଚରିତ୍ରଗତ ତ୍ରୁଟି ଓ ପବିତ୍ର ବିଷୟାବଳୀର ବିଦ୍ରୁପ ହେତୁ ଧର୍ମ ପ୍ରତି ଲୋକଙ୍କର ସମ୍ମାନ ରହେ ନାହିଁ । ଶାନ୍ତି ଓ ସମୃଦ୍ଧି ସହ ଶିକ୍ଷାପ୍ରସାର ସମୟରେ ମଧ୍ୟ ଧର୍ମବିଶ୍ୱାସ କ୍ଷୀଣ ହୋଇଥାଏ; କାରଣ ଦୁଃଖ, ଦୁର୍ଦ୍ଦଶା ସମୟରେ ହିଁ ମନୁଷ୍ୟର ମନ ଧର୍ମ ଆଡ଼କୁ ଆକୃଷ୍ଟ ହୋଇଥାଏ । କିନ୍ତୁ ନାସ୍ତିକତା ଦ୍ୱାରା ମନୁଷ୍ୟର ଗୌରବ ବୃଦ୍ଧି ପାଇବା ପରିବର୍ତ୍ତେ ବିନଷ୍ଟ ହୋଇଯାଏ । ମନୁଷ୍ୟର ଶରୀର ପଶୁତୁଲ୍ୟ । ତେଣୁ ତାହାର ଆତ୍ମାରେ ଦେବତ୍ୱ ସ୍ୱୀକୃତ ନ ହେଲେ, ସେ ଏକ ନୀଚ ଓ ଜଘନ୍ୟ ଜୀବ ହୋଇ ରହିବ । ଭଗବତ୍ ବିଶ୍ୱାସଦ୍ୱାରା ହିଁ ମନୁଷ୍ୟର ପ୍ରକୃତି ଉଦାର ଓ ଉନ୍ନତ ହୁଏ ।

## ଅନ୍ଧ ବିଶ୍ୱାସ

ଅନ୍ଧବିଶ୍ୱାସ ପ୍ରବନ୍ଧରେ ବେକନ୍ କହିଛନ୍ତି ଯେ ଭଗବାନ୍‌ଙ୍କ ସମ୍ବନ୍ଧରେ ଅନୁପଯୁକ୍ତ ମତଦେବା ଅପେକ୍ଷା ବରଂ ତାଙ୍କ ସମ୍ବନ୍ଧରେ କୌଣସି ମତାମତ ନ ଦେବାହିଁ ଭଲ । ଶେଷୋକ୍ତିଟି ବିଶ୍ୱାସର ଅଭାବସୂଚକ ହୋଇପାରେ, କିନ୍ତୁ ପ୍ରଥମୋକ୍ତିଟି ଅପମାନସୂଚକ । ଅନ୍ଧବିଶ୍ୱାସ ଭଗବାନଙ୍କୁ ନିନ୍ଦା କରିବା ସହିତ ସମାନ । ନିରୀଶ୍ୱରବାଦ ଧର୍ମବିଦ୍ୱେଷୀ ହେଲେ ମଧ୍ୟ ମନୁଷ୍ୟର ବିଚାରବୁଦ୍ଧିର ପ୍ରୟୋଗ, ଦାର୍ଶନିକ ଚିନ୍ତା, ପ୍ରାକୃତିକ ଦୃଶ୍ୟ ପ୍ରଦର୍ଶନ, ନିୟମାନୁବର୍ତ୍ତିତା, ଯଶଲିପ୍ସା ଇତ୍ୟାଦି ଉପରେ ପ୍ରଭାବ ବିସ୍ତାର କରେ ନାହିଁ ଏବଂ ଏଗୁଡ଼ିକ ବାହ୍ୟ ନୈତିକ ସଦ୍‌ଗୁଣ ଆଡ଼କୁ ମନୁଷ୍ୟଙ୍କୁ ଆକୃଷ୍ଟ କରି ପାରନ୍ତି । କିନ୍ତୁ ଅନ୍ଧ ବିଶ୍ୱାସ ଏ ସମସ୍ତଙ୍କୁ ମାନବ ମନରୁ ବିଦାୟ ଦେଇ ଏକଚ୍ଛତ୍ରବାଦୀ ରାଜତନ୍ତ୍ର ପ୍ରତିଷ୍ଠା କରେ । ଅନ୍ଧବିଶ୍ୱାସ କ୍ଷେତ୍ରରେ

ବିଜ୍ଞ ଅଜ୍ଞର ପଦାଙ୍କ ଅନୁସରଣ କରେ ; ଯୁକ୍ତି-ସମର୍ଥିତ କର୍ମ ସମ୍ପାଦିତ ନ ହୋଇ ଗତାନୁଗତିକ କର୍ମକୁ ସମର୍ଥନ କରିବା ନିମିତ୍ତ ଅପଯୁକ୍ତିର ଉଦ୍ଭାବନ କରାଯାଏ ।

ଆ ବରଣ ବିହୀନ ଅନ୍ଧବିଶ୍ୱାସ ହେଉଛି ଏକ ବିକୃତ ପଦାର୍ଥ । ମର୍କଟକୁ ମନୁଷ୍ୟ ଭୂଲି ପ୍ରତିଭାତ କରାଇବା ନିମିତ୍ତ ଯେପରି ତାହାକୁ ଆହୁରି ବିକୃତ କରିବାକୁ ପଡ଼େ, ଅନ୍ଧବିଶ୍ୱାସକୁ ଧର୍ମ ଆଖ୍ୟାଦେବା ନିମିତ୍ତ ସେହିପରି ତାହାକୁ ଆହୁରି ବିକୃତ କରିବାକୁ ପଡ଼େ । ଅନ୍ଧବିଶ୍ୱାସର ନିରାକରଣ ସମ୍ବନ୍ଧରେ ଏକ ଅନ୍ଧବିଶ୍ୱାସ ରହିଛି । ତାହା ହେଉଛି ଯେ ଅନ୍ଧବିଶ୍ୱାସ ସମ୍ପର୍କିତ ସମସ୍ତ ପ୍ରଚଳିତ ପ୍ରଥାର ଆମୂଳ ଉଚ୍ଛେଦ ହିଁ ଶ୍ରେୟସ୍କର । ସାଧାରଣ ବ୍ୟକ୍ତି ସଂସ୍କାରକ ହେଲେ ନିର୍ବିଘ୍ନରରେ ଉଚ୍ଛେଦ ବିଧାନ କରି ଅନୁପାଦେୟ ସହିତ ଉପାଦେୟ ପ୍ରଥାର ମଧ୍ୟ ବିନାଶ ଘଟାଇ ଥାଏ ।

## ଉପଦେଶ

ଉପଦେଶ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ ଏଠାରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ବିଶ୍ୱସ୍ତତାର ଚରମ ଅଭିବ୍ୟକ୍ତି ଘଟେ । ଅନ୍ୟାନ୍ୟ କ୍ଷେତ୍ରରେ ମନୁଷ୍ୟ ନିଜ ଜୀବନର କେତେକ ଅଂଶ ଅର୍ଥାତ୍ ନିଜର ଭୂମି, ସମ୍ପତ୍ତି, ଅପତ୍ୟ, କରଜ ଅଥବା ଅନ୍ୟ କୌଣସି ବିଷୟ ପ୍ରକାଶ କରିଥାଏ, କିନ୍ତୁ ଯାହାକୁ ସେ ଉପଦେଷ୍ଟା ରୂପେ ଗ୍ରହଣ କରେ ତାଙ୍କଠାରେ ସେ ସାମୁହିକ ଭାବେ ସମସ୍ତ ବିଷୟ ପ୍ରକାଶ କରିଦିଏ । ବିଜ୍ଞ ରାଜପୁରୁଷମାନଙ୍କର ମଧ୍ୟ ଉପଦେଶ ଗ୍ରହଣ କରିବା ଆବଶ୍ୟକ ହୋଇଥାଏ । କିନ୍ତୁ ଏଥିରେ ତିନୋଟି ଅସୁବିଧା ସୃଷ୍ଟି ହେବା ସମ୍ଭବପର । ଏହାଦ୍ୱାରା ଗୋପନୀୟତା ରହେ ନାହିଁ, ପ୍ରଭାବ କ୍ଷୁଣ୍ଣହୁଏ ଏବଂ ଉପଦେଷ୍ଟା ବିଶ୍ୱାସଘାତକତା କରିବାର ଆଶଙ୍କା ଥାଏ । ତେଣୁ ଉପଦେଷ୍ଟା ନିର୍ବାଚନରେ ସତର୍କତା ଅବଲମ୍ବନ କରିବା ଉଚିତ । କଥିତ ଅଛି ଯେ ମୃତ ବ୍ୟକ୍ତିମାନେହିଁ ସର୍ବୋତ୍ତମ ଉପଦେଷ୍ଟା । ତେଣୁ ପୁସ୍ତକରୁ ଉପଦେଶ ଗ୍ରହଣ କରିବା ଶ୍ରେୟ ।

## ବନ୍ଧୁତା

ବନ୍ଧୁତା ସମ୍ବନ୍ଧରେ ବେକନ୍ କହିଛନ୍ତି—ନିର୍ଜନତାରୁ ଯେ ଆନନ୍ଦ ପାଏ, ସମାଜକୁ ଯେ ଘୃଣା କରେ, ସେ ବନ୍ୟ ପଶୁତୁଲ୍ୟ । ଅବଶ୍ୟ ଉଚ୍ଚ-କୋଟିର ଜ୍ଞାନାର୍ଜନ ନିମନ୍ତେ ନିର୍ଜନତା ଆବଶ୍ୟକ, କିନ୍ତୁ ଏହା ନିର୍ଜନତାକୁ ସୁଖ ପାଇବା ନୁହେଁ । କିନ୍ତୁ ନିର୍ଜନତା କଣ ଓ ତାହା କେତେ ବ୍ୟାପକ, ମନୁଷ୍ୟ ବୁଝି ପାରେ ନାହିଁ । ସୌହାର୍ଦ୍ୟ ଅଭାବରେ ଜନ ସମାବେଶର ଲୋକେ କେହି କାହାର ସହଚର ନୁହଁନ୍ତି ସେମାନଙ୍କର ମୁଖ ଚିତ୍ରଶାଳାର ଚିତ୍ର ବ୍ୟତୀତ ଅନ୍ୟ କିଛି ନୁହେଁ ଏବଂ କଥା କରତାଳର ଧ୍ୱନିଠାରୁ ଭିନ୍ନ ନୁହେଁ । ଯଥାର୍ଥ ବନ୍ଧୁ ନ ଥିଲେ ସମଗ୍ର ପୃଥିବୀ ମଧ୍ୟ ନିର୍ଜନତା ସହିତ ସମାନ ହୋଇଯାଏ । ତେଣୁ ଯେଉଁବ୍ୟକ୍ତି ସ୍ୱଭାବତଃ ବନ୍ଧୁତ୍ୱ-ସୁଖର ଅଯୋଗ୍ୟ, ତାହାଠାରେ ମନୁଷ୍ୟତା ନାହିଁ, ପଶୁତ୍ୱ ହିଁ ରହିଛି ।

ବନ୍ଧୁତାର ପ୍ରଧାନ ଫଳ ହେଉଛି ଏହା ଯେ ବନ୍ଧୁ ନିକଟରେ ପରିପୂର୍ଣ୍ଣ ହୃଦୟର ସମସ୍ତ ଆବେଗକୁ ଉନ୍ମୁକ୍ତ କରି ଦେଇହୁଏ । ଦୁଃଖ, ଆନନ୍ଦ, ଭୟ, ଆଶା, ଉପଦେଶ ଯେ କୌଣସି ବିଷୟରେ ଅନ୍ତର ଉତ୍ପୀଡ଼ିତ ହେଲେ ଯଥାର୍ଥ ବନ୍ଧୁଠାରେ ତାହା ପ୍ରକାଶ୍ୟ । ବନ୍ଧୁତା ଆନନ୍ଦକୁ ଦ୍ୱିଗୁଣ କରିଦିଏ ଓ ଦୁଃଖକୁ ଅର୍ଦ୍ଧେକ କରିଦିଏ ।

ବନ୍ଧୁତାର ଦ୍ୱିତୀୟ ଫଳ ହେଉଛି ଏହା ଯେ ମନ ଯେତେବେଳେ କୌଣସି ଚିନ୍ତାରେ ଭାରାକ୍ରାନ୍ତ ହୁଏ, ବନ୍ଧୁଠାରୁ ଉପଦେଶ ପାଇବା ଆଶାରେ ନ ହେଲେ ମଧ୍ୟ, ଯଦି ସେହି ଚିନ୍ତାକୁ ବନ୍ଧୁ ସମକ୍ଷରେ ଉପସ୍ଥାପିତ କରାଯାଏ ବା ତାଙ୍କ ସହିତ ଆଲୋଚନା କରାଯାଏ, ତେବେ ତାହା ସ୍ପଷ୍ଟତର ହୋଇଯାଏ । ବନ୍ଧୁଠାରୁ ଉପଦେଶ ପାଇବା ଓ ନିଜେ ନିଜକୁ ଉପଦେଶ ଦେବା ମଧ୍ୟରେ ଅନେକ ପାର୍ଥକ୍ୟ । ମନୁଷ୍ୟ ନିଜେ ନିଜର ଶ୍ରେଷ୍ଠ ତୋଷାମଦକାରୀ । ବନ୍ଧୁର ଉପଦେଶ ଓ ତୋଷାମଦକାରୀର ଉପଦେଶ ମଧ୍ୟରେ ପାର୍ଥକ୍ୟ ରହିବା ସ୍ୱାଭାବିକ ।

ବନ୍ଧୁ ନିଜର ଅନ୍ୟ ଏକ ସଂସ୍କରଣ ବୋଲି କୁହାଯାଏ । କିନ୍ତୁ ଯଥାର୍ଥରେ ସେ ଏକ ଉନ୍ନତ ସଂସ୍କରଣ, କାରଣ ମନୁଷ୍ୟ ଯାହା ନିଜେ ମଧ୍ୟ କରିପାରେ ନାହିଁ ତାହା ବନ୍ଧୁ ଦ୍ୱାରା କରାଇ ନେଇହୁଏ । ଜଣେ ଲୋକ ପୁଅ ସହିତ ବାପା ପରି କଥାହୁଏ, ସ୍ତ୍ରୀ ସହିତ ସ୍ୱାମୀପରି କଥାହୁଏ, ଶତ୍ରୁ ସହିତ ସମ୍ମାନ ରକ୍ଷା କରି କଥାହୁଏ । କିନ୍ତୁ ସେହି କଥା ଜଣେ ବନ୍ଧୁ କୌଣସି ଗୋଟିଏ ସମ୍ବନ୍ଧ ଦୃଷ୍ଟିରୁ ନ କହି ଉପସ୍ଥିତ ଅବସ୍ଥା ଦୃଷ୍ଟିରୁ କହି ପାରନ୍ତି ।

## ଧନ

ବେକନଙ୍କ ମତରେ ଧନ ହେଉଛି ସଦ୍‌ଗୁଣ ନିମନ୍ତେ ବ୍ୟବହାର୍ଯ୍ୟ ସାମଗ୍ରୀର ଗଣ୍ଠିରି । ସୈନ୍ୟମାନଙ୍କର ବ୍ୟବହାର୍ଯ୍ୟ ସାମଗ୍ରୀର ଗଣ୍ଠିରିକୁ ଛାଡ଼ିହୁଏ ନାହିଁ କି ତାହାର ଓଜନ ଊଣା କରି ହୁଏନାହିଁ; ଅଥଚ ଏହା ଅଗ୍ରଗତିର ଅନ୍ତରାୟ ହୋଇଥାଏ ଏବଂ ଏହାର ଯତ୍ନ ହେତୁ ସମସ୍ତ ସମୟରେ ବିଜୟ ମଧ୍ୟ ବାଧାପ୍ରାପ୍ତ ହୋଇଥାଏ । ଧନ ମଧ୍ୟ ସଦ୍‌ଗୁଣ ନିମିତ୍ତ ସେହିପରି ଆବଶ୍ୟକ ତଥା ଅନ୍ତରାୟ ହୋଇଥାଏ ।

ଅତ୍ୟଧିକ ଧନର ଦାନ ବ୍ୟତୀତ ଅନ୍ୟ କୌଣସି ଉପାଦେୟତା ନାହିଁ । ବ୍ୟକ୍ତିଗତ ଆବଶ୍ୟକତାର ସୀମା ଅତିକ୍ରମ କଲା ପରେ ଧନକୁ ସଞ୍ଚୟ କରାଯାଇପାରେ, ବଣ୍ଟନ କରାଯାଇପାରେ, ତାହାଦ୍ୱାରା ଲୋକଙ୍କ ଦୃଷ୍ଟି ଆକର୍ଷଣ କରାଯାଇପାରେ; କିନ୍ତୁ ତାହା ବ୍ୟକ୍ତିଗତ ବ୍ୟବହାରରେ ଆସେ ନାହିଁ । ତେଣୁ ଅତ୍ୟଧିକ ଧନକୁ ବ୍ୟବହାରୋପଯୋଗୀ କରିବା ନିମିତ୍ତ ହୀରା, ନୀଳା ପରି କ୍ଷୁଦ୍ର ପ୍ରସ୍ତର ଖଣ୍ଡକୁ କିମ୍ବା କୌଣସି ଦୁଷ୍ପ୍ରାପ୍ୟ ବସ୍ତୁକୁ ଅତ୍ୟଧିକ ମୂଲ୍ୟ ଦେଇ କିଣା ଯାଇଥାଏ ।

ପ୍ରଦର୍ଶନ ପାଇଁ ଧନ ଆହରଣ ନ କରି, ସଂଯମ ରକ୍ଷା କରି ଖର୍ଚ୍ଚ କରିବା ପାଇଁ, ଖସିମନରେ ବଣ୍ଟନ କରିବା ପାଇଁ ଏବଂ ସନ୍ତୁଷ୍ଟ ହୋଇ

ଛୁଡ଼ିଦିବା ପାଇଁ ନ୍ୟାୟୋଚିତ ପନ୍ଥାରେ ଧନୋପାର୍ଜନ କରିବା ଉଚିତ । ସନ୍ନ୍ୟାସୀମାନଙ୍କ ପରି ଧନକୁ ଘୃଣା କରିବା ଉଚିତ ନୁହେଁ; ଧନ ଲାଭରେ ହତାଶ ହୋଇଥିବା ବ୍ୟକ୍ତିମାନେହିଁ ଧନନିନ୍ଦୁକ ହୋଇଥାନ୍ତି ।

ସତ୍‌ଉପାୟରେ ଅର୍ଜିତ ଧନର ଗତି ମନ୍ଥର; ଅସତ୍ ଉପାୟରେ ବା ବିନା ପରିଶ୍ରମରେ ଲବ୍‌ଧ ଧନର ଗତି କ୍ଷିପ୍ର । ଧନୀ ହେବାର ଉପାୟ ଅନେକ, କିନ୍ତୁ ସେଥିରୁ ଅଧିକାଂଶ ଅସତ୍; ମିତବ୍ୟୟିତା ହେଉଛି ସର୍ବୋତ୍ତମ ଉପାୟ, କିନ୍ତୁ ଏହାଦ୍ୱାରା ମନୁଷ୍ୟ ଉଦାର ଓ ବଦାନ୍ୟ ହୋଇ ପାରେ ନାହିଁ । କୃପଣତା କାମ୍ୟ ନୁହେଁ; କାରଣ ଧନର ପରିଥାଏ; କେତେବେଳେ ତାହା ଆପେ ଉଡ଼ିଯାଏ, କେତେବେଳେ ବେଶୀ ଧନପ୍ରାପ୍ତି ଆଶାରେ ତାହାକୁ ଉଡ଼ାଇ ଦିଆଯାଏ ।

## ଉଚ୍ଚାକାଙ୍‌କ୍ଷା

ବେକନ୍‌ଙ୍କ ମତରେ କ୍ରୋଧରୂପୀ ଉଚ୍ଚାକାଙ୍‌କ୍ଷା ବାଧାପ୍ରାପ୍ତ ନ ହେଲେ ମନୁଷ୍ୟକୁ ଉତ୍ତେଜିତ, ବ୍ୟଗ୍ର, ତତ୍ପର ଓ କର୍ମପ୍ରବଣ କରେ; କିନ୍ତୁ ବାଧାପ୍ରାପ୍ତ ହେଲେ ମନୁଷ୍ୟକୁ ବିଦଗ୍‌ଧ, ବିଷାକ୍ତ ଓ ନିନ୍ଦାପ୍ରବଣ କରିଦିଏ । ଉଚ୍ଚାକାଙ୍‌କ୍ଷୀ ବ୍ୟକ୍ତିର ଉନ୍ନତି ଘଟୁଥିଲେ ସେ ସର୍ବଦା ବ୍ୟସ୍ତ ରହେ ଓ ଭୟଙ୍କର ନୁହେଁ । କିନ୍ତୁ ତାହାର ଅଭିଳାଷପୂର୍ଣ୍ଣ ନ ହେଲେ ସେ ଅସନ୍ତୁଷ୍ଟ ଓ ଈର୍ଷାନ୍ୱିତ ହୋଇ ସମସ୍ତ ବସ୍ତୁର ପଶ୍ଚାଦ୍‌ଗତି କାମନା କରେ । ଯେଉଁ ବ୍ୟକ୍ତି ଗୁଣୀବ୍ୟକ୍ତିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେବାର ଉଚ୍ଚାକାଙ୍‌କ୍ଷା ରଖେ, ତାହାର ଅନେକ କିଛି କରିବାର ଥାଏ । ଏହା ସର୍ବସାଧାରଣଙ୍କ ସର୍ବଦା ମଙ୍ଗଳଜନକ । କିନ୍ତୁ ଯେଉଁ ବ୍ୟକ୍ତି ସମସ୍ତଙ୍କୁ କ୍ଷୁଦ୍ର କରି କେବଳ ନିଜେ ପ୍ରତିଷ୍ଠିତ ହେବାକୁ ଷଡ଼ଯନ୍ତ୍ର କରେ ତାହାଦ୍ୱାରା ଗୋଟିଏ ଯୁଗ କ୍ଷତିଗ୍ରସ୍ତ ହୋଇଯାଏ ।

# ପ୍ରଥା ଓ ଶିକ୍ଷା

ପ୍ରଥା ଓ ଶିକ୍ଷା ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ ମନୁଷ୍ୟମାନଙ୍କର ଭାବନା ସେମାନଙ୍କର ଅନୁରକ୍ତି ଅନୁଯାୟୀ, ସେମାନଙ୍କର ଆଲୋଚନା ଓ ବକ୍ତୃତା ସେମାନଙ୍କର ଶିକ୍ଷା ଓ ସ୍ୱଗୃହୀତ ମତାମତ ଅନୁଯାୟୀ ହୋଇଥାଏ; କିନ୍ତୁ ସେମାନଙ୍କର କାର୍ଯ୍ୟ, ସେମାନେ ଯେପରି ଅଭ୍ୟସ୍ତ ସେହିପରି ହିଁ ହୋଇ ଥାଏ । ତେଣୁ ଯେଉଁ କର୍ମ ପ୍ରଥାନୁଗତ ନୁହେଁ, ସ୍ୱଭାବର ବଳରେ ବା ସାହସିକ କଥାରେ ବିଶ୍ୱାସ କରି ତାହା ସମ୍ପାଦିତ ହେବ ବୋଲି ଆଶା କରିବା ଅନୁଚିତ । ଲୋକେ ଅଙ୍ଗୀକାର କରନ୍ତି, ଅଭିଯୋଗ କରନ୍ତି, ଶପଥ ନିଅନ୍ତି, ବଡ଼ବଡ଼ କଥା କହନ୍ତି, କିନ୍ତୁ କଲାବେଳେ ଠିକ୍ ଆଗରୁ ଯେପରି କରିଥାନ୍ତି, ସେହିପରି ହିଁ କରନ୍ତି. ସତେ ଯେପରି ସେମାନେ ପ୍ରଥାଚକ୍ର ଦ୍ୱାରା ଚାଳିତ ମୃତ ପୁତ୍ତଳିକା ବା ଯନ୍ତ୍ର ମାତ୍ର ।

ପ୍ରଥା ହେଉଛି ମନୁଷ୍ୟ ଜୀବନର ସର୍ବ ପ୍ରଧାନ ପରିଚାଳକ । ତେଣୁ ସୁପ୍ରଥା ପ୍ରଚଳନ ନିମିତ୍ତ ସମସ୍ତ ପ୍ରକାର ଚେଷ୍ଟା କରାଯିବା ଉଚିତ । ଅଳ୍ପ ବୟସର ଶିଶୁମାନଙ୍କୁ ଯେଉଁ ପ୍ରଥାରେ ଅଭ୍ୟସ୍ତ କରାଯାଏ, ତାହା ସୁନିଶ୍ଚିତ ଭାବେ ସୁସିଦ୍ଧ ହୁଏ । ଏହି ପ୍ରାଥମିକ ପ୍ରଥାକୁହିଁ ଶିକ୍ଷା କୁହାଯାଏ । ବୟସ୍କ ଅବସ୍ଥା ଅପେକ୍ଷା ବାଲ୍ୟାବସ୍ଥାରେହିଁ ଜିହ୍ୱାକୁ ଭାଷାଗତ ସମସ୍ତ ପ୍ରକାରର ଶବ୍ଦ ଓ କଥାର ଉଚ୍ଚାରଣ କରିବା ନିମିତ୍ତ ଅଭ୍ୟସ୍ତ କରାଯାଇପାରେ; ଶରୀରର ଅଙ୍ଗପ୍ରତ୍ୟଙ୍ଗର ଗଣ୍ଠିକୁ ସମସ୍ତ ପ୍ରକାରର କାର୍ଯ୍ୟ ଓ ଚଳନ ନିମିତ୍ତ ଅଭ୍ୟସ୍ତ କରାଯାଇ ପାରେ । ଜଣ ଜଣ କରି କୌଣସି ପ୍ରଥାରେ ଅଭ୍ୟସ୍ତ କରାଇବା ଅପେକ୍ଷା ଦଳଗତ ଭାବେ ଅଭ୍ୟସ୍ତ କରାଇବା ଅଧିକ ଉପଯୋଗୀ । ଅନ୍ୟକୁ ଦେଖି ଶିଖିହୁଏ, ଅନ୍ୟର ସହଚର୍ଯ୍ୟରୁ ସାନ୍ତ୍ୱନା ମିଳେ, ଅନ୍ୟ ସହ ପ୍ରତିଯୋଗିତା କରି କ୍ଷିପ୍ରତା ଆସେ ଏବଂ ଅନ୍ୟର ଗୌରବ ଦେଖି ଆଗ୍ରହ ଆସେ ।

## ସୌଭାଗ୍ୟ

ଭାଗ୍ୟ ସମ୍ବନ୍ଧରେ ବେକନ୍‌ଙ୍କ ମତ ହେଉଛି ଜଣକର ନିର୍ବୋଧତା ଅନ୍ୟ ଜଣକର ସୌଭାଗ୍ୟର କାରଣ ହେବା ଘଟଣାର ସଂଖ୍ୟା କମ୍ ନୁହେଁ; କିନ୍ତୁ ମୁଖ୍ୟତଃ ମନୁଷ୍ୟର ଭାଗ୍ୟ ତାହାର ନିଜ ହାତରେ ହିଁ ଗଠିତ ହୁଏ । ପ୍ରକାଶ୍ୟ ସଦ୍‌ଗୁଣରୁ ପ୍ରଶଂସା ମିଳେ, କିନ୍ତୁ ଅପ୍ରକାଶିତ ସଦ୍‌ଗୁଣରୁ ସୌଭାଗ୍ୟ ଉଦିତ ହୁଏ । ମନୁଷ୍ୟର ପ୍ରକୃତିରେ ଉନ୍ନତି ବା ଅଗ୍ରସର ହେବା ପାଇଁ ଅନିଚ୍ଛା ନ ଥିଲେ ତାହାର ମନସ୍ତନ୍ତ୍ରର ଆବର୍ତ୍ତନ ସହ ଭାଗ୍ୟଚକ୍ରର ମଧ୍ୟ ଆବର୍ତ୍ତନ ହୋଇଥାଏ । ମନୁଷ୍ୟ ମନୋଯୋଗସହ ତୀକ୍ଷ୍ଣଦୃଷ୍ଟି ଦ୍ୱାରା ଭାଗ୍ୟକୁ ଦେଖି ପାରିବା ସମ୍ଭବପର, କାରଣ ଭାଗ୍ୟ ଅନ୍ଧ ହୋଇ ପାରେ, କିନ୍ତୁ ଅଦୃଶ୍ୟ ନୁହେଁ । ସୌଭାଗ୍ୟ ଲାଭର ପଥ ଆକାଶର ଛାୟାପଥତୁଲ୍ୟ । ଛାୟାପଥର ତାରାଗୁଡ଼ିକ ଏକକ ଭାବରେ ଅଦୃଶ୍ୟ, କିନ୍ତୁ ସମବେତ ଭାବରେ ଆଲୋକପ୍ରଦାୟକ । ସେହିପରି କେତେଗୁଡ଼ିଏ ସଦ୍‌ଗୁଣ ଅର୍ଥାତ୍ ସାମର୍ଥ୍ୟ ଓ ଅଭ୍ୟାସ ଅସ୍ପଷ୍ଟ, କିନ୍ତୁ ସେହିମାନେହିଁ ମନୁଷ୍ୟକୁ ଭାଗ୍ୟବାନ୍ କରିଥାନ୍ତି ।

ହଠାତ୍ ସୌଭାଗ୍ୟ ଲାଭ ହେଲେ ମନୁଷ୍ୟ ଦୁଃସାହସୀ ଓ ଚଞ୍ଚଳମନା ହୁଏ, କଷ୍ଟୋପାର୍ଜିତ ସୌଭାଗ୍ୟ ମନୁଷ୍ୟକୁ ଯୋଗ୍ୟ କରେ । ସୌଭାଗ୍ୟକୁ ସମ୍ମାନ ଦେବା ଉଚିତ, କାରଣ ଏହା ମନୁଷ୍ୟର ଆତ୍ମବିଶ୍ୱାସ ଜାତ କରେ ଓ ମର୍ଯ୍ୟାଦା ବୃଦ୍ଧି କରେ । ଜଣକର ସଦ୍‌ଗୁଣ ଅନ୍ୟମାନଙ୍କର ଈର୍ଷା ଜାତ କରେ । ତେଣୁ ବିଜ୍ଞବ୍ୟକ୍ତିମାନେ ଯାହା ସେମାନଙ୍କର ସଦ୍‌ଗୁଣଲବ୍ଧ ତାହାକୁ ଭାଗ୍ୟଲବ୍ଧ ବୋଲି କହିଥାନ୍ତି । ଯେଉଁମାନେ ନିଜ ସଦ୍‌ଗୁଣର ପ୍ରଚାର କରି ବୁଲନ୍ତି, ସେମାନେ ପରିଶେଷରେ ହତଭାଗ୍ୟ ହୋଇଥାନ୍ତି ।

## ଯୁବକତ୍ୱ ଓ ପୌଢ଼ତ୍ୱ

ଯୁବକତ୍ୱ ଓ ପୌଢ଼ତ୍ୱ ପ୍ରବନ୍ଧରେ ବେକନ୍ କହିଛନ୍ତି ଯେ ଯଦି ଜଣେ ସମୟର ଅପବ୍ୟବହାର କରିନାହିଁ, ସେ ବୟସ ଦୃଷ୍ଟିରୁ ଅପରିଣତ ଅଥଚ

ସମସ୍ତ ଦୃଷ୍ଟିରୁ ପରିଣତ ହୋଇପାରେ । କିନ୍ତୁ ଏହା କଦାଚିତ ହୋଇଥାଏ । ସାଧାରଣତଃ ଯୌବନ ପ୍ରଥମ ଥରର ଚିନ୍ତା ସଦୃଶ, ଏଥିରେ ଦ୍ୱିତୀୟ ଥର ଚିନ୍ତାର ବିଜ୍ଞତା ନ ଥାଏ । ନାବାଳକତ୍ୱ ବୟସଗତ ତଥା ଭାବନାଗତ ହୋଇ ପାରେ । ତଥାପି ଯୁବକମାନଙ୍କର ଉଦ୍ଭାବନ ବୟସ୍କ ବ୍ୟକ୍ତିମାନଙ୍କର ଉଦ୍ଭାବନ ଅପେକ୍ଷା ଅଧିକ ସତେଜ ହୋଇଥାଏ । ଯୁବକ ମାନଙ୍କ ମନରେ କଳ୍ପନା ପ୍ରବାହ ଦୈବିକଭାବରେ ସ୍ୱଚ୍ଛନ୍ଦଭାବରେ ଗତିଶୀଳ ହୋଇଥାଏ । ତେଣୁ ସେମାନେ ବିଚାର କରିବା ଅପେକ୍ଷା ଉଦ୍ଭାବନ କରିବା ନିମିତ୍ତ ଅଧିକତର ଯୋଗ୍ୟ, ଉପଦେଶ ପ୍ରଦାନ କରିବା ଅପେକ୍ଷା କାର୍ଯ୍ୟ ସମ୍ପାଦନ କରିବା ନିମିତ୍ତ ଅଧିକତର ଯୋଗ୍ୟ, ସାଧାରଣ ବ୍ୟବସାୟ କରିବା ଅପେକ୍ଷା ନୂତନ ପ୍ରଯୋଜନା କରିବା ନିମିତ୍ତ ଅଧିକତର ଯୋଗ୍ୟ । ବୟସର ଅଭିଜ୍ଞତା ଜ୍ଞାତ ବିଷୟାବଳୀର ନିର୍ଦ୍ଦେଶରେ କାର୍ଯ୍ୟକାରୀ ହୁଏ, କିନ୍ତୁ ଅଜ୍ଞାତ ବିଷୟ କ୍ଷେତ୍ରରେ ବିଭ୍ରାନ୍ତ ହୋଇଯାଏ । ପ୍ରୌଢ଼ମାନଙ୍କର 'ତ୍ରୁଟି ଆହୁରି ଅଧିକ ହୋଇ ପାରିଥାନ୍ତା' ବା 'ଆହୁରି ଚଞ୍ଚଳ ହୋଇ ପାରିଥାନ୍ତା' ରେ ସୀମିତ, କିନ୍ତୁ ଯୁବକମାନଙ୍କର ତ୍ରୁଟି ବ୍ୟବସାୟକୁ ଧ୍ୱଂସ କରିଦିଏ । କାର୍ଯ୍ୟର ପରିଚାଳନା ଓ ତତ୍ତ୍ୱାବଧାନ କ୍ଷେତ୍ରରେ ଯୁବକମାନେ ଯେତେ କରିପାରନ୍ତି, ତହିଁରୁ ଅଧିକ ଗ୍ରହଣ କରନ୍ତି; ଯେତେ ଶାନ୍ତ ରଖି ପାରନ୍ତି, ତହିଁରୁ ଅଧିକ ଉଦ୍ରେକ କରନ୍ତି; ଉପାୟ ଓ କ୍ରମ ବିବେଚନା ନ କରି ଚରମ ଫଳର ବିଚାର କରନ୍ତି; ଦୈବାନୁକୂଳବିଧି ଅସଙ୍ଗତ ନୀତିର ଅନୁଧାବନ କରନ୍ତି; ନୂତନ ବିଷୟର ପ୍ରଚଳନ କରି ଅଜ୍ଞାତ ଅସୁବିଧା ଆମନ୍ତ୍ରଣ କରି ଆଣନ୍ତି; ପ୍ରଥମରୁହିଁ ଚରମ ପ୍ରତିକାରକ ବ୍ୟବସ୍ଥାର ପ୍ରୟୋଗ କରନ୍ତି; ତ୍ରୁଟି ସ୍ୱୀକାର ନ କରି, ପନ୍ଥା ପରିବର୍ତ୍ତନ ନ କରି ତ୍ରୁଟିଗୁଡ଼ିକୁ ଦ୍ୱିଗୁଣ କରି ଦିଅନ୍ତି । ସେମାନେ ତାଲିମ ପାଇ ନ ଥିବା ଘୋଡ଼ା ପରି, ଅଟକନ୍ତି ନାହିଁ, କିମ୍ବା ଦିଗ ପରିବର୍ତ୍ତନ କରନ୍ତି ନାହିଁ । ପ୍ରୌଢ଼ମାନେ ଅତ୍ୟଧିକ ଆପତ୍ତି କରନ୍ତି; ଅତ୍ୟଧିକ ପରାମର୍ଶ ନିଅନ୍ତି; ଅତ୍ୟଳ୍ପ ସାହସ କରନ୍ତି, ଅତିଶୀଘ୍ର ଅନୁତାପ କରନ୍ତି ଏବଂ ସାଧାରଣତଃ କୌଣସି ବ୍ୟବସାୟର ଶେଷ ପର୍ଯ୍ୟନ୍ତ ନ ଯାଇ, ସାମାନ୍ୟ

ଧରଣର ସଫଳତାରେ ସନ୍ତୁଷ୍ଟ ରହନ୍ତି । ଉଭୟ ଗୋଷ୍ଠୀର ଲୋକଙ୍କ ସହଯୋଗ ଯେ କୌଣସି କାର୍ଯ୍ୟପାଇଁ ଲାଭପ୍ରଦ ହୁଏ ।

## ସୌନ୍ଦର୍ଯ୍ୟ

ସୌନ୍ଦର୍ଯ୍ୟ ସମ୍ବନ୍ଧରେ ମନ୍ତବ୍ୟ ଦେବାକୁ ଯାଇ ବେକନ୍ କହିଛନ୍ତି ଯେ ସଦ୍‌ଗୁଣ ହେଉଛି ଗୋଟିଏ ମୂଲ୍ୟବାନ ପ୍ରସ୍ତର ତୁଲ୍ୟ । ଅନଳଂକୃତଭାବେ ସ୍ଥାପିତ ହେଲେ ତାହା ସର୍ବୋତ୍କୃଷ୍ଟ ହୋଇଥାଏ । ସାଧାରଣତଃ ଅତ୍ୟନ୍ତ ସୌନ୍ଦର୍ଯ୍ୟବାନ୍ ବ୍ୟକ୍ତିମାନେ ଅନ୍ୟାନ୍ୟ ମହତ୍ ସଦ୍‌ଗୁଣରେ ଭୂଷିତ ହୋଇ ନ ଥାନ୍ତି ।

ସୌନ୍ଦର୍ଯ୍ୟ କ୍ଷେତ୍ରରେ ବର୍ଣ୍ଣ ଅପେକ୍ଷା ଆକୃତିକ ଗଠନର ମୂଲ୍ୟ ବେଶୀ, ଆକୃତିକ ଗଠନ ଅପେକ୍ଷା ମାଧୁର୍ଯ୍ୟପୂର୍ଣ୍ଣ ସୁଶୀଳତାର ମୂଲ୍ୟ ବେଶୀ । ତେଣୁ ସୌନ୍ଦର୍ଯ୍ୟର ସର୍ବୋତ୍ତମ ଅଂଶ ଚିତ୍ରରେ ପ୍ରକଟିତ ହୋଇପାରେ ନାହିଁ କିମ୍ବା ପ୍ରଥମ ଦର୍ଶନରେ ଦେଖି ହୁଏ ନାହିଁ । ଭିନ୍ନ ଭିନ୍ନ ମୁହଁର ସର୍ବୋତ୍ତମ ଅଂଶର ସମ୍ମିଶ୍ରଣରେ ସର୍ବାପେକ୍ଷା ସୁନ୍ଦର ମୁହଁର ଚିତ୍ର ଅଙ୍କନ କରିବା ସମ୍ଭବପର ନୁହେଁ । କୌଣସି ଚିତ୍ରକର ଏପର୍ଯ୍ୟନ୍ତ ଥିବା ସମସ୍ତ ମୁହଁଠାରୁ ଆହୁରି ଅଧିକ ସୁନ୍ଦର ମୁହଁର ଚିତ୍ର ଅଙ୍କନ କରି ନ ପାରେ, ଏ କଥା ନୁହେଁ । କିନ୍ତୁ ଏହା ସୌଭାଗ୍ୟତଃ ସମ୍ଭବପର, ନିୟମାନୁବର୍ତ୍ତିତା ଦ୍ୱାରା ନୁହେଁ । ଗୋଟିଏ ମୁହଁର ଭିନ୍ନ ଭିନ୍ନ ଅଂଶ ମଧ୍ୟରୁ କୌଣସିଟି ସୁନ୍ଦର ନ ହୋଇ ପାରିଥାଏ, ତଥାପି ସେମାନଙ୍କର ସମାବେଶ ମନୋମୁଗ୍ଧକର ହୋଇ ପାରେ । ସୌନ୍ଦର୍ଯ୍ୟ ଗ୍ରୀଷ୍ମଋତୁର ଫଳ ସଦୃଶ, ଯାହା ଅଳ୍ପଦିନରେ ପଚି-ଯାଏ ଏବଂ ବେଶୀଦିନ ରହିପାରେ ନାହିଁ । ଏହା ମନୁଷ୍ୟକୁ ଯୌବନା-ବସ୍ଥାରେ ଭ୍ରଷ୍ଟାଚାରୀ କରେ ଏବଂ ସେଥିନିମିତ୍ତ ଅଧିକ ବୟସରେ ଲଜ୍ଜିତ ଓ ଅନୁତପ୍ତ ହେବାକୁ ପଡ଼େ । କିନ୍ତୁ ଏହା ମଧ୍ୟ ସୁନିଶ୍ଚିତଭାବେ ସତ୍ୟ ଯେ ଏହା ସଦ୍‌ଗୁଣ ସମନ୍ୱିତ ହୋଇଥିଲେ ସଦ୍‌ଗୁଣଗୁଡ଼ିକୁ ଜାଜ୍ୱଲ୍ୟମାନ ଏବଂ ଦୁର୍ଗୁଣଗୁଡ଼ିକୁ ମ୍ରିୟମାଣ କରେ ।

# ଅଧ୍ୟୟନ

ପୁସ୍ତକ ପଠନ ସମ୍ବନ୍ଧରେ ବେକନ୍ କହିଛନ୍ତି ଯେ ଏହାର ଉଦ୍ଦେଶ୍ୟ ହେଉଛି ବିନୋଦନ, ଶୋଭନ ଓ ସାମର୍ଥ୍ୟ । ଏକାନ୍ତରେ, ଅବସର ସମୟରେ ଚିତ୍ତବିନୋଦନ ନିମିତ୍ତ ପୁସ୍ତକ ପଠନ କରାଯାଏ; ଭାବ ବିନିମୟ କାଳରେ ପଠନଲବ୍ଧ ଜ୍ଞାନ ବହୁମୂଲ୍ୟ ଅଳଙ୍କାର ରୂପେ କାର୍ଯ୍ୟକରେ ଏବଂ ବିଚାର ଓ କର୍ମସମ୍ପାଦନରେ ଏହା ସାମର୍ଥ୍ୟ ଯୋଗାଇ ଥାଏ । ନିର୍ଦ୍ଦିଷ୍ଟ ବିଷୟରେ ବିଚାର ତଥା କର୍ମସମ୍ପାଦନ ସୁନିପୁଣ ବ୍ୟକ୍ତି କରିପାରେ; କିନ୍ତୁ ସାମୂହିକଭାବେ ଉପଦେଶ ପ୍ରଦାନ ଓ ଯୋଜନାର ପ୍ରସ୍ତୁତ କରଣ ତଥା ନିର୍ଦ୍ଦେଶନା-ନିୟନ୍ତ୍ରଣ କେବଳ ଜ୍ଞାନଗର୍ଭ ବ୍ୟକ୍ତିଙ୍କ ଦ୍ୱାରା ସୁରୁଚିରୂପେ ସମ୍ପନ୍ନ ହୋଇପାରେ ।

ପଠନଦ୍ୱାରା ସହଜାତ ପ୍ରବୃତ୍ତିଗୁଡ଼ିକ ପୂର୍ଣ୍ଣତାପ୍ରାପ୍ତ ହୁଅନ୍ତି ଓ ଅଭିଜ୍ଞତା ଦ୍ୱାରା ପଠିତ ବିଷୟଗୁଡ଼ିକ ପୂର୍ଣ୍ଣତା ପ୍ରାପ୍ତ ହୁଅନ୍ତି । ଧୂର୍ତ୍ତବ୍ୟକ୍ତି, ପଠନକୁ ହେୟଜ୍ଞାନ କରେ, ସରଳ ବ୍ୟକ୍ତି ପଠନର ପ୍ରଶଂସା କରେ ଏବଂ ଜ୍ଞାନୀବ୍ୟକ୍ତି ତାହାର ଉପଯୋଗ କରେ । ମତାନ୍ତର ଖଣ୍ଡନ କରିବା ନିମିତ୍ତ ବା ଦ୍ୱିଧାହୀନ ଭାବେ ବିଶ୍ୱାସ କରିବା ନିମିତ୍ତ ବା ବକ୍ତବ୍ୟ ଓ ଆଲୋଚନା ଜାଣିବା ନିମିତ୍ତ ପଠନ ନ କରି ବିଚାର ଓ ବିବେଚନା କରିବା ନିମିତ୍ତ ପୁସ୍ତକ ଅଧ୍ୟୟନ କରିବା ଉଚିତ । କେତେକ ପୁସ୍ତକ ଆସ୍ୱାଦନୀୟ, ଅନ୍ୟ କେତେକ ଗଳାଧଃକରଣୀୟ ଏବଂ ଅଳ୍ପ କେତେକ ଚର୍ବଣୀୟ ତଥା ପରିପାଚ୍ୟ; ଅର୍ଥାତ୍ କେତେକ ପୁସ୍ତକ ଆଂଶିକଭାବେ ପଠନୀୟ ; କେତେକ ପଠନୀୟ କିନ୍ତୁ ତନ୍ମଧ୍ୟରେ ଅନୁସନ୍ଧିତ୍ସା ଅନାବଶ୍ୟକ ଏବଂ ଅଳ୍ପ କେତେକ ପୁସ୍ତକ ସମ୍ପୂର୍ଣ୍ଣଭାବେ, ଅଧ୍ୟବସାୟ ତଥା ମନୋଯୋଗ-ପୂର୍ବକ ପଠନୀୟ । ଅଧ୍ୟୟନ ମନୁଷ୍ୟକୁ ପୂର୍ଣ୍ଣତା ପ୍ରାପ୍ତ କରେ; ଆଲୋଚନା ତାହାକୁ ପ୍ରତ୍ୟୁତ୍ପନ୍ନ କରେ ଏବଂ ଲେଖନୀ ଚାଳନା ତାହାକୁ ଯଥାର୍ଥ ମନୁଷ୍ୟରେ ପରିଣତ କରେ । ମନୁଷ୍ୟକୁ ଇତିହାସ ଜ୍ଞାନୀ, କବିତା ବୁଦ୍ଧିମାନ, ଗଣିତ ସୂକ୍ଷ୍ମଦର୍ଶୀ, ପ୍ରାକୃତିକ ଦର୍ଶନ ଗଭୀର, ନୀତିଶାସ୍ତ୍ର ଗମ୍ଭୀର ଏବଂ ତର୍କଶାସ୍ତ୍ର ଓ ଅଳଙ୍କାରଶାସ୍ତ୍ର ଯୁକ୍ତିକ୍ଷମ କରେ । ଅଧ୍ୟୟନଦ୍ୱାରା ବୁଦ୍ଧି କ୍ଷେତ୍ରର ସମସ୍ତ ବାଧାବିଘ୍ନ ଅତିକ୍ରମ କରାଯାଇ ପାରେ ।

## ଷଷ୍ଠ ପରିଚ୍ଛେଦ

# ବେକନ୍‌ଙ୍କର ଦାର୍ଶନିକ ଚିନ୍ତାଧାରାର ବୈଶିଷ୍ଟ୍ୟ

ପାଶ୍ଚାତ୍ୟ ଦର୍ଶନର ଇତିହାସ ଗ୍ରୀକ୍‌ଦର୍ଶନରୁ ଆରମ୍ଭ କରାଯାଏ । ଗ୍ରୀକ୍ ଦର୍ଶନରେ ସୌନ୍ଦର୍ଯ୍ୟ ଉପରେ ପ୍ରାଧାନ୍ୟ ଆରୋପ କରାଯାଇଥିଲା । ଗ୍ରୀକ୍ ଦାର୍ଶନିକମାନେ ସତ୍ତା ଓ ସୌନ୍ଦର୍ଯ୍ୟ ପରସ୍ପର ନିବିଡଭାବେ ସଂଯୁକ୍ତ ବୋଲି ମନେ କରୁଥିଲେ । ତେଣୁ ସେମାନଙ୍କର କଳ୍ପନାରେ ବିଶ୍ୱ ଓ ବିଶୃଙ୍ଖଳା ପରସ୍ପର-ବିରୋଧୀ ; ପ୍ରାକୃତିକ କାର୍ଯ୍ୟ ସର୍ବଦା ବୈଚିତ୍ର୍ୟମୟ ଓ ଉଦ୍ଦେଶ୍ୟ-ପ୍ରଣୋଦିତ; ସୃଷ୍ଟିକର୍ତ୍ତା ସର୍ବଦା ନ୍ୟାୟପରାୟଣ ଓ ମଙ୍ଗଳମୟ ; ଶାରୀରିକ ଶ୍ରମ ଅପେକ୍ଷା ମାନସିକ ଚିନ୍ତା ଅଧିକ ମନୁଷ୍ୟୋଚିତ ଓ ଗୌରବାବହ । ତେଣୁ ଚିନ୍ତାଶୀଳ, ଭାବପ୍ରବଣ କବିମାନେ ହିଁ ଏ ଯୁଗର ପ୍ରଧାନ ଦାର୍ଶନିକ ।

ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାରର ପ୍ରଭାବ ଦ୍ୱାରା ଦାର୍ଶନିକ ଚିନ୍ତାଧାରାର ଗତିପଥ ପରିବର୍ତ୍ତିତହେଲା । ତେଣୁ ପାଶ୍ଚାତ୍ୟ ଦର୍ଶନର ଇତିହାସରେ ଗୋଟିଏ ନୂତନ ଯୁଗର ସୂତ୍ରପାତ ହେଲା । ମଧ୍ୟଯୁଗୀୟ ଦର୍ଶନରେ

ସୌନ୍ଦର୍ଯ୍ୟ ପରିବର୍ତ୍ତେ ଧର୍ମଭାବ ଉପରେ ପ୍ରାଧାନ୍ୟ ଅର୍ପଣ କରାଗଲା । କଳ୍ପନା ବା ଚିନ୍ତା ଅପେକ୍ଷା ବିଶ୍ୱାସର ଗୁରୁତ୍ୱ ବୃଦ୍ଧି ପାଇଲା । ଐହିକ ସୁଖ ଅପେକ୍ଷା ପାରତ୍ରିକ ସୁଖ ଅଧିକତର କାମ୍ୟ ବିବେଚିତ ହେଲା । ସୌନ୍ଦର୍ଯ୍ୟ-ମୟ ବିଶ୍ୱ ରହସ୍ୟମୟ ହୋଇ ଉଠିଲା । ଧର୍ମ ଓ ଦର୍ଶନର ଏକତ୍ର ସମାବେଶ ହେତୁ ଦାର୍ଶନିକ ଚିନ୍ତା ମୁଖ୍ୟତଃ ଈଶ୍ୱରସମ୍ବନ୍ଧୀୟ ଓ ପ୍ରାର୍ଥନାମୂଳକ ହେଲା । ତେଣୁ ଧର୍ମଯାଜକ ଓ ଭକ୍ତିପରାୟଣ ବ୍ୟକ୍ତିମାନେ ହିଁ ଏ ଯୁଗର ପ୍ରଧାନ ଦାର୍ଶନିକ ।

କାଳକ୍ରମେ ବୈଜ୍ଞାନିକ ଅଗ୍ରଗତି, ବୈଦ୍ଧିକ ବିକାଶ ଓ ଶିକ୍ଷାର ପ୍ରସାର ଘଟି ପୁନର୍ଜାଗରଣ ଯୁଗର ସୂତ୍ରପାତ ହେଲା ଏବଂ ମଧ୍ୟଯୁଗୀୟ ଦର୍ଶନର ଅସାରତା ଉପଲବ୍‌ଧ ହେଲା । ଏହାର ପରିଣତି ସ୍ୱରୂପ ଦାର୍ଶନିକ ଭାବଧାରାର ଗତି ପୁଣି ପରିବର୍ତ୍ତିତ ହେଲା । ଦର୍ଶନର ଏହି ନୂତନ ଯୁଗର ପ୍ରବର୍ତ୍ତକମାନଙ୍କ ମଧ୍ୟରେ ବେକନ୍ ଅନ୍ୟତମ ।

ଏହି ନୂତନ ଅର୍ଥାତ୍ ଆଧୁନିକ ଦର୍ଶନ ମୁଖ୍ୟତଃ ବିଜ୍ଞାନ ଉପରେ ପ୍ରତିଷ୍ଠିତ । ଏଥିରେ ସୌନ୍ଦର୍ଯ୍ୟର ଉପଭୋଗ ନାହିଁ ବା ଧର୍ମଭାବର ଆଧିପତ୍ୟ ନାହିଁ । ନଗ୍ନ ସତ୍ୟର ଅନୁସନ୍ଧାନ ଏହାର ଏକମାତ୍ର ଲକ୍ଷ୍ୟ । କୁସଂସ୍କାର ଓ ପ୍ରଚଳିତ ଧର୍ମମତର ବିରୁଦ୍ଧ ଭାବଦ୍ୟୋତକ ହେଲେ ମଧ୍ୟ ଯାହା ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣଲବ୍‌ଧ ଅଥବା ଅକାଟ୍ୟ ଯୁକ୍ତି ସମର୍ଥିତ ତାହାହିଁ ଗ୍ରହଣୀୟ । ଆଧୁନିକ ଦର୍ଶନରେ ପ୍ରାକୃତିକ ଘଟଣାର ବ୍ୟାଖ୍ୟା ନୈସର୍ଗିକ ଉଦ୍ଦେଶ୍ୟ ଆରୋପରେ ସୀମିତ ନୁହେଁ । ଏଠାରେ ପ୍ରାକୃତିକ ଘଟଣାର ବ୍ୟାଖ୍ୟା ପ୍ରାକୃତିକ ପ୍ରଣାଳୀର ବିଶ୍ଳେଷଣ ଦ୍ୱାରା କରାଯାଏ । ମୃତ୍ୟୁପରେ ସ୍ୱର୍ଗୀୟ ସୁଖ ଭୋଗ ଆଶାରେ ମନୁଷ୍ୟ ନିଜ ସମାଜର ଐହିକ ଉନ୍ନତି ଓ ସମୃଦ୍ଧିରେ ପରାଙ୍ମୁଖ ହୁଏ ନାହିଁ । ଭଗବାନଙ୍କୁ ପାର୍ଥିବ ଜଗତର ବହିର୍ଭୂତ ନ କରି ଏହି ଜଗତରେହିଁ ତାଙ୍କର କାର୍ଯ୍ୟକଳାପ ଲକ୍ଷ୍ୟ କରାଯାଏ । ତେଣୁ ପ୍ରକୃତି, ବିଜ୍ଞାନ ଓ ସାମାଜିକ ପ୍ରଗତି ଏହି ଦର୍ଶନରେ ପ୍ରାଧାନ୍ୟ ଲାଭ କରେ ।

ଆଧୁନିକ ଦର୍ଶନ ମଧ୍ୟଯୁଗୀୟ ଦର୍ଶନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରେ, କିନ୍ତୁ ଏହା ଧର୍ମବିରୋଧୀ ନୁହେଁ । ଗ୍ରୀକ୍‌ଦର୍ଶନକୁ ଏହା ସମାଲୋଚନା କରେ, କିନ୍ତୁ ସମୂଳେ ପରିତ୍ୟାଗ କରେ ନାହିଁ । କୌଣସି ଯୁଗୀୟ ଦର୍ଶନର ଧ୍ୱଂସସ୍ତୂପ ଉପରେ ଏହା ରଚିତ ନୁହେଁ, ବରଂ ପ୍ରାଚୀନ ଦର୍ଶନର ମୂଳପତ୍ତନକୁ ଭିତ୍ତି କରି ଗଠିତ ଦାର୍ଶନିକ ସୌଧରେ ହିଁ ଏହା ଯୁଗୋପଯୋଗୀ ସଂସ୍କାର ଓ ପରିବର୍ତ୍ତନ ଆନୟନ କରେ । ଏହା କୌଣସି ଗୋଷ୍ଠୀ ବା କୌଣସି ଦେଶର ଦର୍ଶନ ନୁହେଁ । ଜ୍ଞାନାଲୋକର ବିକାଶ ଘଟାଇବା ନିମିତ୍ତ ଯେ କୌଣସି ଦେଶର, ଯେ କୌଣସି ଅନୁରକ୍ତ ଓ ସମର୍ଥ ବ୍ୟକ୍ତିର ସହଯୋଗ ଏହାର କାମ୍ୟ । ତେଣୁ ଆଧୁନିକ ଦର୍ଶନରେ ସୈନିକ, ରାଜନୀତିଜ୍ଞ, ଚିକିତ୍ସକ, ବୈଜ୍ଞାନିକ, ଧର୍ମଯାଜକ, ଅଧ୍ୟାପକ ପ୍ରଭୃତି ବିଭିନ୍ନ ଗୋଷ୍ଠୀର ବିଭିନ୍ନ ଦେଶର ବ୍ୟକ୍ତିଙ୍କ ଅବଦାନ ରହିଛି ।

ଆଧୁନିକ ଯୁଗର ଦାର୍ଶନିକ ଚିନ୍ତାଧାରାର ପ୍ରଥମ ପ୍ରବର୍ତ୍ତକ ହିସାବରେ ଜର୍ମାନୀରେ ନିକୋଲାସ୍ (୧), ଇଂଲଣ୍ଡରେ ବେକନ୍ ଓ ଫ୍ରାନ୍‌ସରେ ଡେକାର୍ଟ ସ୍ୱୀକୃତ ହୋଇଥାନ୍ତି । କାଳାନୁକ୍ରମେ ବିବେଚନା କଲେ ନିକୋଲାସ (୧୪୦୧-୧୪୬୪) ଙ୍କର ରଚନାରେ ହିଁ ସର୍ବପ୍ରଥମେ ଆଧୁନିକ ଦର୍ଶନର ସ୍ୱରୂପ ପ୍ରକାଶ ପାଇଥିଲା । ତାପରେ ବେକନ୍ (୧୫୬୧—୧୬୨୬) ଙ୍କର ରଚନାବଳୀରେ ଏହା ସୁସ୍ପଷ୍ଟ ହୋଇଯାଇଥିଲା । କିନ୍ତୁ ନିକୋଲାସ ବା ବେକନ୍‌ଙ୍କର ଦାର୍ଶନିକ ଚିନ୍ତାଧାରାର ଅଭିବ୍ୟକ୍ତିକୁ ଏକ ପୂର୍ଣ୍ଣାଙ୍ଗ ଦର୍ଶନ ବୋଲି ସ୍ୱୀକାର କରିଯାଏ ନାହିଁ । ତେଣୁ ଡେକାର୍ଟହିଁ ଆଧୁନିକ ଦର୍ଶନର ଜନକ ବୋଲି ପରିଗଣିତ ହୋଇଥାନ୍ତି ।

ବେକନ୍ ନିଜକୁ ତାଙ୍କ ଯୁଗର 'ତୂରୀବାଦକ' (୨) ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କର ଏହି ପଦବୀ ପ୍ରାପ୍ୟ, କାରଣ ସେ ହିଁ ପ୍ରଥମେ ଗତାନୁ-

(୧) Nicolas of Cusa

(୨) Trumpeter

ଗଡିକ ପ୍ରଥା ଓ ନିଷ୍ଫଳ ଦର୍ଶନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ନିକୋଲାସ୍‌ଙ୍କ ରଚନାବଳୀରେ ଆଧୁନିକ ଦର୍ଶନ ଚେତନା ଲାଭ କରିଥିଲେ ମଧ୍ୟ ତାହାର ବିଜୟ ଅଭିଯାନ ଆରମ୍ଭ ହୋଇ ନ ଥିଲା । ନିକୋଲାସ୍‌ଙ୍କ ଦର୍ଶନରେ ମଧ୍ୟଯୁଗୀୟ ଦର୍ଶନର ପ୍ରଭାବ ଆଦୌ ନିଷ୍ପ୍ରଭ ହୋଇ ନ ଥିଲା । ନିକୋଲାସ୍ ନିଜେ ପୋପଙ୍କ ନିଯୁକ୍ତି ପ୍ରାପ୍ତ ଜଣେ ଧର୍ମଯାଜକ ଥିଲେ ଏବଂ ଦାର୍ଶନିକ ଚିନ୍ତାକୁ ଧର୍ମବିଶ୍ୱାସଠାରୁ ପୃଥକ୍ କରି ପାରି ନଥିଲେ । ତେଣୁ ତାଙ୍କ ଚିନ୍ତାଧାରାରେ ଆଧୁନିକ ଦର୍ଶନ ମଧ୍ୟଯୁଗୀୟ ଦର୍ଶନଦ୍ୱାରା ଆବଦ୍ଧ ବନ୍ଦୀରୂପେ ହୋଇ ରହିଥିଲା । କିନ୍ତୁ ବେକନ୍‌ଙ୍କ ଦାର୍ଶନିକ ଚିନ୍ତାଧାରାରେ ପୁରାତନ ଦର୍ଶନମାନଙ୍କର କବଳରୁ ଆଧୁନିକ ଦର୍ଶନ ସମ୍ପୂର୍ଣ୍ଣଭାବେ ମୁକ୍ତ ହୋଇ ଯାଇଥିଲା । ବେକନ୍ ଧର୍ମ ଓ ଦର୍ଶନର ପରିସର ସମ୍ପୂର୍ଣ୍ଣ ପୃଥକ୍ ବୋଲି ବିବେଚନା କରୁଥିଲେ । ଏହା କେବଳ ଆଧୁନିକ ଦର୍ଶନ ନୁହେଁ ଆଡ୍ୟାଧୁନିକ ଦର୍ଶନର ବକ୍ତବ୍ୟ । ଧୀଶକ୍ତିକୁ ସମ୍ପୂର୍ଣ୍ଣରୂପେ ସମସ୍ତ ପ୍ରକାର ସନ୍ଦେହାତ୍ମକ ଧାରଣାରୁ ବିମୁକ୍ତ କରି ଓ ସ୍ୱାଧୀନ ଭାବେ କାର୍ଯ୍ୟ କରିବା ନିମିତ୍ତ ସୁଯୋଗ ଦେଇ କେବଳ ତଲ୍ଲବ୍ଧ ଜ୍ଞାନ ଉପରେ ଦର୍ଶନ ପ୍ରତିଷ୍ଠିତ କରିବାରେ ବେକନ୍ ଅଗ୍ରଣୀ ଥିଲେ । ଧର୍ମ ବିଶ୍ୱାସ ଉପରେ ପ୍ରତିଷ୍ଠିତ, କିନ୍ତୁ ଦର୍ଶନ ପର୍ଯ୍ୟବେକ୍ଷଣ, ପରୀକ୍ଷଣ ତଥା ଧୀଶକ୍ତିର ପରିଚାଳନାଜନିତ ଜ୍ଞାନ ଉପରେ ପ୍ରତିଷ୍ଠିତ । ଧର୍ମବିଶ୍ୱାସରେ ଯୁକ୍ତିତର୍କର ସ୍ଥାନ ନାହିଁ, ଦର୍ଶନରେ କୌଣସି ପ୍ରକାର ଅପ୍ରତିଷ୍ଠିତ କଳ୍ପନାର ସ୍ଥାନ ନାହିଁ । ତେଣୁ ପ୍ରକଳ୍ପ ରଚନା କରି ପର୍ଯ୍ୟବେକ୍ଷଣ ବା ପରୀକ୍ଷଣ କରିବା ପ୍ରଣାଳୀର ମଧ୍ୟ ବେକନ୍ ବିରୋଧୀ ଥିଲେ । ସୁତରାଂ ସେହି ପ୍ରଥମେ ପୁରାତନ ଦାର୍ଶନିକ ଚିନ୍ତାଧାରା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦର୍ଶନ ସତ୍ୟର ପୂଜାରୀ । ସତ୍ୟତା ଆବିଷ୍କାର କରିବା ଏହାର ଲକ୍ଷ୍ୟ । ଶହ ଶହ ବର୍ଷଧରି ସତ୍ୟ ବୋଲି ଗୃହୀତ ହୋଇଥିବା ବିଷୟ କେବଳ ସେହି କାରଣରୁ ହିଁ ସତ୍ୟ ହୋଇ ନ ପାରେ । ଆରିଷ୍ଟୋଟଲ୍ ବା

ଟମାସ୍ ଏକ୍ୱିନସ (୩) ଯାହା କହିଛନ୍ତି, କେବଳ ସେହିକାରଣରୁ ହିଁ ତାହା ସତ୍ୟ ହୋଇ ନ ପାରେ । ଯାହା ପ୍ରିୟ, ହୃଦୟଗ୍ରାହୀ, ମାନବର ସମ୍ମାନସୂଚକ, କେବଳ ସେହି କାରଣରୁ ହିଁ ତାହା ସତ୍ୟ ହୋଇ ନ ପାରେ । କିନ୍ତୁ ସମସ୍ତ ପ୍ରକାର ପ୍ରାକ୍‌କଳ୍ପନାର ପ୍ରଭାବ ବିମୁକ୍ତ ଧୀଶକ୍ତିକୁ ଯାହା ସତ୍ୟ ବୋଲି ସ୍ପଷ୍ଟତଃ ପ୍ରତିଭାତ ହୁଏ, ଯହିଁରେ ସନ୍ଦେହର ଆଦୌ ଅବକାଶ ନ ଥାଏ, କେବଳ ତାହାହିଁ ସତ୍ୟ । ତେଣୁ ଆଧୁନିକ ଦର୍ଶନର ସାଧନ ପର୍ଯ୍ୟବେକ୍ଷଣ ଓ ମନନ ଏବଂ ଲକ୍ଷ୍ୟ ଯଥାର୍ଥ ସତ୍ୟର ଅନୁସନ୍ଧାନ । ଆଧୁନିକ ଦର୍ଶନରେ ନୂତନ ଭାବେ ଜ୍ଞାନୋପକରଣ ଓ ଜ୍ଞାନାର୍ଜନ ପଦ୍ଧତିର ପରୀକ୍ଷା କରି ନୂତନଭାବେ ଜ୍ଞାନର ସୀମାଧାର୍ଯ୍ୟ କରି ଯାଇଥିଲା । ଆଧୁନିକ ଯୁଗର ଦାର୍ଶନିକମାନଙ୍କର ଦର୍ଶନରେ ଦାର୍ଶନିକ ତତ୍ତ୍ୱର ଆଲୋଚନା କରିଯିବା ପୂର୍ବରୁ ଜ୍ଞାନାହରଣ ପଦ୍ଧତିସମ୍ବନ୍ଧୀୟ ଆଲୋଚନା କରାଯାଇଥାଏ । କାଣ୍ଟ (୪)ଙ୍କ ଦର୍ଶନରେ ଏହା ବିଶେଷତଃ ସୁସ୍ପଷ୍ଟ । ଆଧୁନିକ ଦର୍ଶନର ଏହି ନୂତନ ଆଭିମୁଖ୍ୟ ଗ୍ରହଣରେ ବେକନ୍‌ଙ୍କ ଅବଦାନ ଯେ ମହତ୍ତ୍ୱପୂର୍ଣ୍ଣ, ଏଥିରେ ସନ୍ଦେହର ଅବକାଶ ନାହିଁ । ମିଲ୍‌ଙ୍କ କାର୍ଯ୍ୟକାରଣ ସମ୍ବନ୍ଧ ନିରୂପକ ପଦ୍ଧତିରେ ତାଙ୍କର ଆରୋହ ପଦ୍ଧତିର ସୁସ୍ପଷ୍ଟ ସ୍ୱାକ୍ଷର ବିଦ୍ୟମାନ ।

ବେକନ୍ ଇନ୍ଦ୍ରିୟ ପ୍ରତ୍ୟକ୍ଷବାଦର ମଧ୍ୟ ଭିତ୍ତି-ପ୍ରସ୍ତର ସ୍ଥାପନ କରିଥିଲେ ବୋଲି କୁହାଯାଇପାରେ । ପ୍ଲେଟୋ ଏବଂ ଆରିଷ୍ଟୋଟଲ୍‌ଙ୍କର ବୁଦ୍ଧିବାଦ (୫) ଏବଂ ମଧ୍ୟଯୁଗୀୟ ଦର୍ଶନର ଆଧ୍ୟାତ୍ମବାଦ (୬) ଫଳରେ ଦର୍ଶନରେ ଏକ ସ୍ଥିତାବସ୍ଥାର ସୃଷ୍ଟି ହୋଇଥିଲା । ବିବଦମାନ ଶୌଦ୍ଧିକ ବିଷୟରେ ପ୍ଲେଟୋ ଏବଂ ଆରିଷ୍ଟୋଟଲ୍‌ଙ୍କ ଉକ୍ତି ଉଦ୍ଧାର କରି ଏବଂ

---

(୩) Thomas Aquinas (1227-1274)
(୪) Immanuel Kant (1724-1804)
(୫) Rationalism
(୬) Spiritualism

ପାରତ୍ରିକ ବିଷୟରେ ଟମାସ୍ ଏକ୍ୱିଇନସ, ଆନସେଲ୍ମ (୭) ପ୍ରଭୃତିଙ୍କ ଉକ୍ତି ଉଦ୍ଧାର କରି ସିଦ୍ଧାନ୍ତ ଗ୍ରହଣ କରିବା ପ୍ରଥାଗତ ହୋଇଯାଇଥିଲା । ବେକନ୍ ଏହି ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରତ୍ୟକ୍ଷ ପ୍ରଣାଳୀରେ ଜ୍ଞାନ ଆହରଣ ପଦ୍ଧତିର ପ୍ରଚଳନ କରିଥିଲେ ।

ଭଗବାନ୍‌ଙ୍କ କଥା ଓ କାର୍ଯ୍ୟ ସମସ୍ତଙ୍କ ସମକ୍ଷରେ ରହିଛି । ଭଗବାନ୍ ପ୍ରତ୍ୟେକ ମନୁଷ୍ୟକୁ ଯଥାର୍ଥ ଜ୍ଞାନ ଆହରଣ କରିବାକୁ ଧୀଶକ୍ତି ଦେଇଛନ୍ତି । ତେଣୁ ଅନ୍ୟ ଉପରେ ନିର୍ଭର ନ କରି ଯେ କୌଣସି ବ୍ୟକ୍ତି ତାହାରୁ ଯଥାର୍ଥ ଜ୍ଞାନ ଅର୍ଜନ କରିପାରେ । ଭଗବାନ୍‌ଙ୍କ କଥା ବାଇବେଲ୍‌ର ପ୍ରତ୍ୟେକ ପଂକ୍ତିରେ ପ୍ରତିଧ୍ୱନିତ ଏବଂ ତାହାଙ୍କ କାର୍ଯ୍ୟ ବିଶ୍ୱପ୍ରକୃତିର ସର୍ବତ୍ର ପରିବ୍ୟାପ୍ତ । ତେଣୁ କେବଳ ପୁସ୍ତକଗତ ବିଦ୍ୟା ଉପରେ ନିର୍ଭର ନ କରି ପ୍ରକୃତି ପର୍ଯ୍ୟବେକ୍ଷଣ ଦ୍ୱାରା ଜ୍ଞାନ ଆହରଣ କରିବାକୁ ବେକନ୍ ଆହ୍ୱାନ ଜଣାଇ ଥିଲେ । ଫଳତଃ ତାଙ୍କ ପରବର୍ତ୍ତୀ ଇଂରେଜ ଦାର୍ଶନିକମାନଙ୍କ ଦର୍ଶନରେ ଇନ୍ଦ୍ରିୟ-ପ୍ରତ୍ୟକ୍ଷବାଦର ଏକ ବିଶିଷ୍ଟ ଭୂମିକା ରହିଥିଲା ।

କିନ୍ତୁ ବେକନ୍‌ଙ୍କର ଦାର୍ଶନିକ ଚିନ୍ତାଧାରାର ମୌଳିକ ବୈଶିଷ୍ଟ୍ୟ ହେଉଛି ତାଙ୍କର ଦର୍ଶନର ଲକ୍ଷ୍ୟ ନିରୂପଣ । ପ୍ରାକୃତିକ ବିଜ୍ଞାନ ହେଉ ବା ପ୍ରାକୃତିକ ଦର୍ଶନ ହେଉ, ନୀତିବିଜ୍ଞାନ ହେଉ ବା ରାଜନୀତିବିଜ୍ଞାନ ହେଉ ପ୍ରତ୍ୟେକ କ୍ଷେତ୍ରରେ ବେକନ୍‌ଙ୍କ ଲକ୍ଷ୍ୟ ସୁସ୍ପଷ୍ଟ । ତାହା ତାଙ୍କ ନିଜ ଭାଷାରେ ହେଉଛି 'ଫଳଲାଭ' । ତାଙ୍କ ମତରେ ମନୁଷ୍ୟ ସମାଜର ସୁଖ-ସମୃଦ୍ଧି ବୃଦ୍ଧି ଓ ଦୁଃଖ-ଦୁର୍ଦ୍ଦଶାର ହ୍ରାସ କରିବା ଉଦ୍ଦେଶ୍ୟରେହିଁ ସମସ୍ତ ଚିନ୍ତା ଓ ବିଦ୍ୟା ପରିଚାଳିତ ହେବା ଉଚିତ । ବେକନ୍‌ଙ୍କ ଦର୍ଶନରେ 'ଉପାଦେୟତା' ଓ 'ଅଗ୍ରଗତି' ଏହି ଦୁଇଟି ବିଷୟ ସର୍ବାପେକ୍ଷା ଅଧିକ ପ୍ରାଧାନ୍ୟ ଲାଭ କରିଥିଲା ଏବଂ ଦର୍ଶନକୁ ଉପାଦେୟ ଓ ଅଗ୍ରଗାମୀ କରାଇବା ନିମିତ୍ତ ସେ ଜୀବନ-ବ୍ୟାପୀ ଚେଷ୍ଟା କରିଥିଲେ ।

---

(୭) **Anselm (1035-1109)**

ସକ୍ରେଟିସ୍ (୮) ଙ୍କ ପରବର୍ତ୍ତୀ ଯୁଗର ପ୍ରାଚୀନ ଦର୍ଶନରେ ଉପାଦେୟତା କଥା ଆଦୌ ଚିନ୍ତା କରାଯାଉ ନ ଥିଲା; ଦର୍ଶନ ଦୈନନ୍ଦିନ ଜୀବନର କାର୍ଯ୍ୟ ସହିତ ସମ୍ପର୍କ ରକ୍ଷା କରିବାର ଆବଶ୍ୟକତା କଥା ବିଚାର କରାଯାଉ ନ ଥିଲା । ତେଣୁ ପରମସତ୍ତ୍ୱ, ଆଦର୍ଶ ଚରିତ୍ର ଇତ୍ୟାଦି ବିଷୟର ଆଲୋଚନା କରି ଶାଶ୍ୱତ ସତ୍ୟରେ ଉପନୀତ ହେବା ଓ ଅପରିବର୍ତ୍ତନୀୟ ଦର୍ଶନ ରଚନା କରିବା ହିଁ ଦାର୍ଶନିକର କାର୍ଯ୍ୟ ବୋଲି ବିବେଚିତ ହେଉ ଥିଲା । ତେଣୁ ଏହି ସମସ୍ତ ଦର୍ଶନ ଚିନ୍ତା-ସର୍ବସ୍ୱ ହୋଇ ରହିବା ସ୍ୱାଭାବିକ ।

ପ୍ରାଚୀନ ଦର୍ଶନରେ ମନୁଷ୍ୟକୁ ହସ୍ତଶିଳ୍ପ ଶିକ୍ଷା ଦେବା ଦର୍ଶନର ଲକ୍ଷ୍ୟ ନୁହେଁ; ଆଧ୍ୟାତ୍ମିକତାର ବିକାଶହିଁ ଏହାର ଏକମାତ୍ର ଲକ୍ଷ୍ୟ ବୋଲି ବିଚାର କରାଯାଉଥିଲା । କିନ୍ତୁ ଆଧ୍ୟାତ୍ମିକତା ସମ୍ବନ୍ଧୀୟ ଦାର୍ଶନିକ ତତ୍ତ୍ୱର ପ୍ରଚାର ଦ୍ୱାରା ସାଧାରଣ ଜନତା ଯେ ଆଦୌ ଉପକୃତ ହେଉ ନ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । ବସ୍ତୁତଃ ଏ ପ୍ରକାର ଆଦର୍ଶ ଦର୍ଶନ ସୃଷ୍ଟି କରି ଦାର୍ଶନିକ ନିଜେ ଆନନ୍ଦ-ବିହ୍ୱଳ ହୋଇ ପାରନ୍ତି; ତାଙ୍କର ଅନୁଗାମୀମାନେ ମୁହ୍ୟମାନ ଓ ଚମତ୍କୃତ ହୋଇପାରନ୍ତି; କିନ୍ତୁ ବାସ୍ତବତା ଠାରୁ ଏହା ସମ୍ପୂର୍ଣ୍ଣ ବିଚ୍ଛିନ୍ନ । ଏହାକୁ କାର୍ଯ୍ୟୋପଯୋଗୀ କରିବା ଏକ ଅସମ୍ଭବ ବ୍ୟାପାର । ପ୍ଲେଟୋ ନିଜର 'ରିପବ୍ଲିକ' (୯) ପରିକଳ୍ପିତ ଆଦର୍ଶ ଶାସନ ପଦ୍ଧତିକୁ ବାସ୍ତବରୂପ ଦେବାକୁ ଯାଇ କପରି ଅପଦସ୍ଥ ହୋଇଥିଲେ ତାହା ଏ ପ୍ରକାର ଦର୍ଶନର କାର୍ଯ୍ୟକ୍ଷେତ୍ରରେ ଅସାଫଲ୍ୟର ଜ୍ୱଳନ୍ତ ନିଦର୍ଶନ ।

ପୁଣି ଯାହା ଶାଶ୍ୱତ ସତ୍ୟ, ତାହା ତ୍ରିକାଳ ଉପଯୋଗୀ ଓ ଅପରିବର୍ତ୍ତନୀୟ ପ୍ରାଚୀନ ଦର୍ଶନ କେବଳ ଏହି ପ୍ରକାର ସତ୍ୟରେ ଅନୁରକ୍ତ ହୋଇଥିବାରୁ ଏଠାରେ ପ୍ରଗତିର ସ୍ଥାନ ନାହିଁ । ବିଶ୍ୱବ୍ରହ୍ମାଣ୍ଡକୁ ସାମୂହିକ ଭାବେ ସନ୍ଦର୍ଶନ କରି ଗଭୀର ଚିନ୍ତା ବଳରେ ଦାର୍ଶନିକ ଯେଉଁ ସତ୍ୟରେ

---

(୮) Socrates, (469-399 B. C.)

(୯) 'Republic' of Plato

ଉପନୀତ ହୁଅନ୍ତି, ତାହା ସାକ୍ଷ୍ୟ-ପ୍ରମାଣ ସାପେକ୍ଷ ନୁହେଁ ବା ସାଧାରଣ ଯୁକ୍ତିଦ୍ୱାରା ଖଣ୍ଡନୀୟ ନୁହେଁ । ପୁଣି ଦର୍ଶନରେ ମୁଖ୍ୟତଃ ଯେଉଁ ପ୍ରକାର ପ୍ରଶ୍ନର ଉତ୍‌ଥାପନ କରାଯାଉଥିଲା—ଅର୍ଥାତ୍ ସୃଷ୍ଟିର ଉଦ୍ଦେଶ୍ୟ କଣ ? ପରମ ପୁରୁଷାର୍ଥ କଣ ? ଦୁଃଖ ଶାନ୍ତିକାରକ କି ? ସାଧୁ ବ୍ୟକ୍ତି ପ୍ରକୃତରେ ଅସୁଖୀ ହୋଇ ପାରେ କି ? ଇତ୍ୟାଦି-ସେଗୁଡ଼ିକର ଯେ କୌଣସି ଉତ୍ତର ସର୍ବତୋଭାବେ ସନ୍ତୋଷଜନକ ହେବା ସମ୍ଭବପର ନୁହେଁ । ତେଣୁ କେବଳ ଯୁକ୍ତିତର୍କହିଁ ସାର ହେଉଥିଲା । ପ୍ରାଚୀନ ଦାର୍ଶନିକମାନେ ଯୁକ୍ତିତର୍କ କ୍ଷେତ୍ରରେ ଯେ ଅପାର ପାରଦର୍ଶିତା ଅର୍ଜନ କରିଥିଲେ, ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ଉଦ୍ଦେଶ୍ୟ ଯେ ସୁମହାନ୍ ଏଥିରେ ମଧ୍ୟ ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ଦାର୍ଶନିକ ଚିନ୍ତାଦ୍ୱାରା ଉପାଦେୟ ଓ କର୍ମାଭିମୁଖୀ ଜ୍ଞାନର ପ୍ରଗତି ହେଉଥିଲା ବୋଲି କୁହାଯାଇ ନ ପାରେ ।

ବେକନ୍‌ଙ୍କ ଦର୍ଶନର ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ଦର୍ଶନକୁ କାର୍ଯ୍ୟୋପଯୋଗୀ କରିବା, ଜ୍ଞାନକୁ ମନୁଷ୍ୟ ସମାଜର ଉପକାର ନିମିତ୍ତ ବିନିଯୋଗ କରିବା; ପ୍ରକୃତିକୁ ବିଶ୍ଳେଷଣ କରି ତନ୍ନିହିତ ନିୟମର ଆବିଷ୍କାର ଓ ପ୍ରୟୋଗ ଦ୍ୱାରା ମନୁଷ୍ୟର ଐହିକ ସୁଖ ସମୃଦ୍ଧି ବୃଦ୍ଧି କରିବା । ଆବିଷ୍କାର ଓ ଉଦ୍ଭାବନ ଏହାର ମାନଦଣ୍ଡ, ଓ ଅଗ୍ରଗତି ଏହାର ବିଜୟଧ୍ୱନି । ଯେ କୌଣସି କାର୍ଯ୍ୟ ପ୍ରାଚୀନ ଦାର୍ଶନିକମାନଙ୍କ ଦୃଷ୍ଟିକୋଣରୁ ଯେତେ ନିମ୍ନସ୍ତରୀୟ ବୋଲି ବିବେଚିତ ହେଲେ ମଧ୍ୟ ଯଦି ତାହା ମାନବ ସମାଜର ସୁଖ ବୃଦ୍ଧି ଅଥବା ଦୁଃଖ ହ୍ରାସ କରିବା ନିମିତ୍ତ ଉପଯୋଗୀ ତାହା ବେକନୀୟ ଦର୍ଶନରେ ଅନୁଧ୍ୟାନ ଯୋଗ୍ୟ । ତେଣୁ ବେକନ୍‌ଙ୍କ ଦର୍ଶନ ଉଭୟ ଲକ୍ଷ୍ୟ ଓ ସାଧନ ଦୃଷ୍ଟିରୁ ଏକ ସମ୍ପୂର୍ଣ୍ଣ ଅଭିନବ ଦର୍ଶନ ।

ବେକନ୍‌ଙ୍କ ଦର୍ଶନକୁ ସୁଖବାଦୀ ଓ ବାସ୍ତବବାଦୀ ଦର୍ଶନ (୧୦) ବୋଲି କୁହାଯାଇ ପାରେ । ସକ୍ରେଟିସ୍ ଓ ପ୍ଲେଟୋ ଦାର୍ଶନିକର କାର୍ଯ୍ୟ ଆଦର୍ଶ

(୧୦) Hedonistic and realistic philosophy

ମନୁଷ୍ୟର ଧାରଣା ଦେବା ବୋଲି ମନେ କରୁଥିଲେ, କିନ୍ତୁ ବେକନ୍ ସାଧାରଣ ମନୁଷ୍ୟର ସୁଖବିଧାନ କରିବା ଦାର୍ଶନିକର କାର୍ଯ୍ୟ ବୋଲି ମନେ କରୁଥିଲେ । ପ୍ଳେଟୋଙ୍କ ମତରେ ଦର୍ଶନ ନିମିତ୍ତ ମନୁଷ୍ୟର ସୃଷ୍ଟି, କିନ୍ତୁ ବେକନ୍‌ଙ୍କ ମତରେ ମନୁଷ୍ୟ ନିମିତ୍ତ ଦର୍ଶନର ସୃଷ୍ଟି । ସାଧାରଣ ବ୍ୟକ୍ତିଠାରୁ ଦାର୍ଶନିକ ଅଧିକ ଧୀଶକ୍ତିସମ୍ପନ୍ନ । ଦାର୍ଶନିକ ତାଙ୍କର ଗମ୍ଭୀର ଚିନ୍ତା ଓ ଉନ୍ନତ ବିଦ୍ୟାକୁ ସାଧାରଣ ମନୁଷ୍ୟର ସେବାରେ ବିନିଯୋଗ କରିବା ଆବଶ୍ୟକ । ଯିଶୁଖ୍ରୀଷ୍ଟଙ୍କ କାର୍ଯ୍ୟ ଦାର୍ଶନିକର ଆଦର୍ଶ । ଯିଶୁଖ୍ରୀଷ୍ଟ ଯେପରି ପାପୀର ପରିତ୍ରାଣ ନିମିତ୍ତ ନିଜକୁ ଉତ୍ସର୍ଗ କରିଥିଲେ, ଦାର୍ଶନିକ ସେହିପରି ସାଧାରଣ ମନୁଷ୍ୟର ଦୁଃଖ ଲାଘବ କରିବାକୁ ନିଜକୁ ଉତ୍ସର୍ଗ କରିବା ଉଚିତ । ଏହି ଦୃଷ୍ଟିରୁ ହିଁ ଦାର୍ଶନିକ ଉପଯୁକ୍ତ ନୀତି ଓ ଧର୍ମର ଶିକ୍ଷା ବ୍ୟବସ୍ଥା କରିବା ଆବଶ୍ୟକ । ଯଥାଯଥ ରାଜନୈତିକ ଓ ସାମାଜିକ ନିୟମ ପ୍ରଣୟନ କରି ଆଭ୍ୟନ୍ତରୀଣ ଶାନ୍ତି ପ୍ରତିଷ୍ଠା ଓ ବୈଦେଶିକ ଆକ୍ରମଣକୁ ପ୍ରତିହତ କରିବା ଆବଶ୍ୟକ, ସମସ୍ତ ପ୍ରକାର ବିଜ୍ଞାନ ଓ ଶିଳ୍ପବିଦ୍ୟାର ଉନ୍ନତି ବିଧାନ କରି ସମାଜକୁ ସମୃଦ୍ଧ ଓ ମାନବକୁ ସୁଖୀ କରିବା ଆବଶ୍ୟକ । ତେଣୁ ପ୍ରାଚୀନ ଦାର୍ଶନିକ ମାନେ ଯାହାକୁ ଦାର୍ଶନିକର ଆଦୌ କାର୍ଯ୍ୟ ନୁହେଁ ବୋଲି ବିବେଚନା କରୁଥିଲେ, ବେକନ୍ ସେ ସବୁକୁ ଦର୍ଶନର ଅନ୍ତର୍ଭୁକ୍ତ କରିଥିଲେ ।

ପ୍ରାଚୀନ ଦାର୍ଶନିକମାନେ ମନୁଷ୍ୟକୁ ଦେବତା ତୁଲ୍ୟ କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ବେକନ୍ ମନୁଷ୍ୟକୁ ମନୁଷ୍ୟ ଭାବରେ ରହିବାକୁ ଦେଇ ତାହାର ସର୍ବବିଧ ଉନ୍ନତି ପାଇଁ ଚେଷ୍ଟା କରିଥିଲେ । ପ୍ରାଚୀନ ଦାର୍ଶନିକମାନଙ୍କର ଉଦ୍ଦେଶ୍ୟ ଉନ୍ନତ, କିନ୍ତୁ ସିଦ୍ଧି ଅସମ୍ଭବ; ବେକନ୍‌ଙ୍କ ଉଦ୍ଦେଶ୍ୟ ନମ୍ର କିନ୍ତୁ ସିଦ୍ଧି ସମ୍ଭବପର । ପ୍ରାଚୀନ ଦାର୍ଶନିକମାନଙ୍କର ଦର୍ଶନ ବିତର୍କରେ ଆରବ୍ଧ ହୋଇ ବିତର୍କରେ ହିଁ ପରିସମାପ୍ତି ଲାଭ କରୁଥିଲା; ବେକନ୍‌ଙ୍କର ଦର୍ଶନ ପ୍ରକୃତିର ପର୍ଯ୍ୟବେକ୍ଷଣରେ ଆରବ୍ଧ ହୋଇ କଳା-କୌଶଳରେ ରୂପାନ୍ତରିତ ହେଉଥିଲା । ପ୍ରାଚୀନ ଦାର୍ଶନିକମାନେ ମନୁଷ୍ୟର ମାନସିକ ଓ ଆତ୍ମିକ ଉନ୍ନତି ବିଧାନ କରୁଥିଲେ ବୋଲି ଦାବି କରୁଥିଲେ :

କିନ୍ତୁ ଏଥିରେ ମଧ୍ୟ ସେମାନେ ସଫଳ କାମ ହୋଇଥିଲେ ବୋଲି କହିବା ସମ୍ଭବପର ନୁହେଁ; ବେକନ୍ ମନୁଷ୍ୟର ସ୍ଥୂଳ ଶରୀରର ଓ ସାଧାରଣ ମାନସିକ ପ୍ରବୃତ୍ତିର ପରିତୃପ୍ତି ବିଧାନ ପାଇଁ ଚେଷ୍ଟିତ ହୋଇଥିଲେ ଏବଂ ତାଙ୍କର ଚେଷ୍ଟା ନିଷ୍ଫଳ ହୋଇ ନଥିଲା । ଷ୍ଟୋଇକ୍‌ମାନଙ୍କର 'ଜ୍ଞାନୀବ୍ୟକ୍ତି' (୧୧) ଏ ପର୍ଯ୍ୟନ୍ତ ପୃଥିବୀରେ ଜନ୍ମଗ୍ରହଣ କରିନାହିଁ ; ପ୍ଲେଟୋଙ୍କ ଆଦର୍ଶ ରାଷ୍ଟ୍ର (୧୨) ଏ ପର୍ଯ୍ୟନ୍ତ ପୃଥିବୀରେ ସମ୍ଭବପର ହୋଇ ନାହିଁ, କ୍ରିସିପସ୍‌ଙ୍କ (୧୩) ନିପରୀ ପୁ କ୍ରଦ୍ୱାରା ମନୁଷ୍ୟର ଯନ୍ତ୍ରଣା ଅପନୋଦିତ ହୋଇ ନାହିଁ ; କିନ୍ତୁ ବେକନୀୟ ଦର୍ଶନ ପ୍ରଯୋଜିତ ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ ଫଳରେ ଜନସାଧାରଣ ଯେ ଉପକୃତ ହୋଇଛନ୍ତି, ଏଥିରେ ସନ୍ଦେହର ଅବକାଶ ନାହିଁ ।

ବେକନ୍‌ଙ୍କ ଦର୍ଶନ ହେଉଛି ଏକ ପ୍ରାକୃତିକ ଓ ପ୍ରୟୋଗାତ୍ମକ ଦର୍ଶନ (୧୪) । ଏଠାରେ ତାତ୍ତ୍ୱିକ ଆଲୋଚନା ପରିବର୍ତ୍ତେ ବୈଜ୍ଞାନିକ ଆଲୋଚନା କରାଯାଏ । ଅନୈତିକତାକୁ ଶାରୀରିକ ଅସୁସ୍ଥତାର ଅନୁରୂପ ଏକ ମାନସିକ ଅସୁସ୍ଥତା ବୋଲି ମନେ କରି ଉଭୟ କ୍ଷେତ୍ରରେ ଯଥାଯଥ ଚିକିତ୍ସାର ବ୍ୟବସ୍ଥା କରାଯାଏ । ଧର୍ମଭାବକୁ ପରପ୍ରତି ଉଦାରଭାବ ପୋଷଣ କରିବା ନିମିତ୍ତ, ମନ୍ଦ ପ୍ରବୃତ୍ତିର ବିନାଶ ନିମିତ୍ତ, ଦୁଃସ୍ଥ ଅବସ୍ଥାରେ ସାନ୍ତ୍ୱନା ପାଇବା ନିମିତ୍ତ, ମାନସିକ ଦୁର୍ବଳ ମୁହୂର୍ତ୍ତରେ ସାହସ ପାଇବା ନିମିତ୍ତ, ମୃତ୍ୟୁର ବିଭୀଷିକାରୁ ରକ୍ଷାପାଇବା ନିମିତ୍ତ କାର୍ଯ୍ୟକାରୀ କରାଯାଏ ; କିନ୍ତୁ ଦର୍ଶନରେ ନୀତି ଓ ଧର୍ମ ସଂକ୍ରାନ୍ତ କୌଣସି ବାଦବିସମ୍ବାଦକୁ ସ୍ଥାନ ଦିଆ ଯାଏ ନାହିଁ । ବେକନ୍‌ଙ୍କ ସମୟରେ ବିରୋଧୀ ଧର୍ମଗୋଷ୍ଠୀମାନଙ୍କର ବିବାଦ

---

(୧୧) Wise man of the Stoics

(୧୨) Ideal state of plato

(୧୩) Chrysippus (282-209 B. C)

(୧୪) Naturalistic and practical philosophy

ଅତ୍ୟନ୍ତ ଉଗ୍ର ଆକାର ଧାରଣ କରିଥିଲା ; କିନ୍ତୁ ବେକନ୍ ଏଥିରେ ସମ୍ପୂର୍ଣ୍ଣ ନିସ୍ପୃହ ରହିଥିଲେ ।

ସମାଲୋଚକମାନଙ୍କ ଦୃଷ୍ଟିରେ ବେକନ୍ ଜଣେ ମହାନ୍ ବୈଜ୍ଞାନିକ ନୁହଁନ୍ତି କିମ୍ବା ମହାନ୍ ଦାର୍ଶନିକ ନୁହଁନ୍ତି ।

ବେକନ୍ଙ୍କ ବୈଜ୍ଞାନିକ ଉଚ୍ଚକୋଟିର ନୁହେଁ । ସେ କୌଣସି ନୂତନ ଉଦ୍ଭାବନ କରି ନାହାନ୍ତି । କୋପାର୍ନିକସ୍ ଗାଲିଲିଓ, ଗିଲ୍ବାର୍ଟ, ହାରଭେ (୧୫) ପ୍ରଭୃତି ବୈଜ୍ଞାନିକମାନଙ୍କ ଯୁଗାନ୍ତକାରୀ ଉଦ୍ଭାବନ ଓ କାର୍ଯ୍ୟକଳାପର ଯଥାର୍ଥ ମୂଲ୍ୟ ନିରୂପଣ ମଧ୍ୟ ତାଙ୍କ ରଚନାବଳୀରେ ସ୍ଥାନ ପାଇ ନାହିଁ । ବୈଜ୍ଞାନିକ ପରୀକ୍ଷଣରେ ପ୍ରକଳ୍ପ ପ୍ରଣୟନର ଗୁରୁତ୍ୱ ରହିଛି ; କିନ୍ତୁ ବେକନ୍ ଯେ କୌଣସି ପ୍ରକାର ପ୍ରାକ୍କଳନା ପରିହାର୍ଯ୍ୟ ବୋଲି ମନେ କରୁଥିବାରୁ ତାଙ୍କର ବୈଜ୍ଞାନିକ ଗବେଷଣା ପରୀକ୍ଷଣମୂଳକ ନ ହୋଇ ଅନୁଭୂତି ବା ପର୍ଯ୍ୟବେକ୍ଷଣ ମୂଳକ ହିଁ ହୋଇ ରହିଥିଲା ।

ପ୍ରାକୃତିକ ବିଜ୍ଞାନର ଅଗ୍ରଗତି ଉପରେ ବେକନ୍ ବିଶେଷ ଗୁରୁତ୍ୱ ଅର୍ପଣ କରୁଥିଲେ ମଧ୍ୟ ଏହାର ଅଗ୍ରଗତି ବିଧାନ ନିମିତ୍ତ ସେ କୌଣସି ଅଭିନବ ଉପାୟ ଉଦ୍ଭାବନ କରି ନ ଥିଲେ । ତାଙ୍କ ବର୍ଣ୍ଣିତ ଆରୋହ ପଦ୍ଧତି ପ୍ରାକୃତିକ ବିଷୟର ଜ୍ଞାନ ଲାଭ ଓ ସାମାନ୍ୟୀକରଣର ଏକ ଚିରାଚରିତ ପ୍ରଥା । ତେଣୁ ତାହାଙ୍କୁ ଅରୋହ ପଦ୍ଧତିର ଉଦ୍ଭାବକ ବୋଲି କୁହାଯାଇ ନ ପାରେ । ସେ ହିଁ ପ୍ରଥମେ ଏହି ପଦ୍ଧତିର ଯଥାର୍ଥ ବିଶ୍ଳେଷଣ କରି ଏହାର ଉପାଦେୟତା ସମ୍ବନ୍ଧରେ ଅବହିତ କରାଇ ଥିଲେ ବୋଲି କହିଲେ ମଧ୍ୟ

(୧୫) Nicolaus Copernicus (1473-1543)
Galilei Galileo (1564-1642)
William Gilbert (1540-1603)
William Harvey (1578-1657)

ସତ୍ୟର ଅପଳାପ ହେବ, କାରଣ ଆରିଷ୍ଟୋଟଲଙ୍କ ତର୍କଶାସ୍ତ୍ରରେ ସଂକ୍ଷିପ୍ତ ହେଲେ ସୁଦ୍ଧା ଆରୋହ ପଦ୍ଧତିର ବିଶ୍ଳେଷଣ ଓ କାର୍ଯ୍ୟକାରିତାର ସୁସ୍ପଷ୍ଟ ବର୍ଣ୍ଣନା ରହିଛି । ଅବରୋହ ଯୁକ୍ତିଦ୍ୱାରା କୌଣସି ନୂତନ ସତ୍ୟର ଆବିଷ୍କାର କରାଯାଇ ନ ପାରେ ଏବଂ ଏଥିନିମିତ୍ତ ଆରୋହାନୁମାନ ଆବଶ୍ୟକ ବୋଲି ଆରିଷ୍ଟୋଟଲ୍ ସ୍ପଷ୍ଟତଃ ମତବ୍ୟକ୍ତ କରିଥିଲେ । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ବେକନ୍‌ଙ୍କ ଆରୋହ ପଦ୍ଧତିର ବିଶ୍ଳେଷଣ ପୁଙ୍ଖାନୁପୁଙ୍ଖ ଓ ଯଥାର୍ଥ ଏବଂ ପୂର୍ବରୁ କୌଣସି ଦାର୍ଶନିକ ଆରୋହ ପଦ୍ଧତି ଉପରେ ଏତେ ପରିମାଣରେ ଗୁରୁତ୍ୱ ଅର୍ପଣ କରି ନଥିଲେ । କିନ୍ତୁ ବେକନ୍‌ଙ୍କ ଏହାର କାର୍ଯ୍ୟକାରିତା ସମ୍ବନ୍ଧୀୟ ବର୍ଣ୍ଣନା ଅଯୁକ୍ତ ଓ ଅତିରଞ୍ଜନ ଦୋଷଦୁଷ୍ଟ । ଏକ ଅନଭ୍ୟସ୍ତ ବ୍ୟକ୍ତି ପକ୍ଷରେ ମଧ୍ୟ କମ୍ପାସ ସାହାଯ୍ୟରେ ବୃତ୍ତାଙ୍କନ ଯେପରି ସହଜସାଧ୍ୟ; ରୁଲବାଡ଼ି ସାହାଯ୍ୟରେ ସରଳ ରେଖା ଅଙ୍କନ ଯେପରି ସହଜ ସାଧ୍ୟ, ତାଙ୍କ ପଦ୍ଧତି ସାହାଯ୍ୟରେ ଯେ କୌଣସି ବ୍ୟକ୍ତି ପକ୍ଷରେ ମଧ୍ୟ ବୈଜ୍ଞାନିକ ଉଦ୍ଭାବନ ସେହିପରି ସହଜସାଧ୍ୟ ହେବ ବୋଲି ସେ ମତ ଦେଇ ଥିଲେ । କିନ୍ତୁ କୌଣସି କାର୍ଯ୍ୟର ସଫଳତା ତାହାର ପ୍ରଣାଳୀଗତ ଜ୍ଞାନ ଉପରେ ସଂପୂର୍ଣ୍ଣଭାବେ ନିର୍ଭରଶୀଳ ନୁହେଁ । ଏହା ନିର୍ଭର କରେ ପ୍ରଣାଳୀକୁ ଯଥୋପଯୁକ୍ତ ଭାବେ ପ୍ରୟୋଗ କରିବାର ସାମର୍ଥ୍ୟ ଉପରେ ।

ବେକନଙ୍କ ଦର୍ଶନ ହିଁ ସର୍ବ ପ୍ରଥମ ପ୍ରକୃତ ପର୍ଯ୍ୟବେକ୍ଷଣମୂଳକ ଓ ବିଜ୍ଞାନଭିତ୍ତିକ ଦର୍ଶନ ବୋଲି ମଧ୍ୟ କୁହାଯାଇ ନ ପାରେ । ସର୍ବ ପ୍ରଥମ ଗ୍ରୀକ୍ ଦାର୍ଶନିକମାନଙ୍କର ଦାର୍ଶନିକ ସିଦ୍ଧାନ୍ତ ପ୍ରକୃତିର ପର୍ଯ୍ୟବେକ୍ଷଣରୁ ହିଁ ସଂଗୃହୀତ ହୋଇଥିଲା । ଏନାକ୍‌ସାଗୋରସ, ଲିଉସିପସ୍, ଡେମୋକ୍ରିଟସ, ପାରମିନାଇଡ଼ିଜ୍, ହିରାକ୍ଲାଇଟସଙ୍କ (୧୭) ଦର୍ଶନରେ ପ୍ରକୃତ ପର୍ଯ୍ୟବେକ୍ଷଣ ସ୍ଥାନ ପାଇଥିଲା ବୋଲି ବେକନ୍ ସ୍ୱୀକାର କରିଥିଲେ । ଏତଦ୍‌ବ୍ୟତୀତ

(୧୭) Anaxagoras (500-428 B. C.)
Leucippus (5th century B. C.)
Democritus (460 370 B. C.)
Parmenides (6th century B. C.)
Heracleitus (535-475 B. C.)

ତାଙ୍କ ପୂର୍ବରୁ ଇଟାଲୀୟ ପ୍ରାକୃତିକ ଦାର୍ଶନିକମାନଙ୍କ ଦର୍ଶନରେ ମଧ୍ୟ ବିଜ୍ଞାନ ପ୍ରାଧାନ୍ୟଲଭ କରିଥିଲା ।

ବିଜ୍ଞାନକୁ ପ୍ରାକୃତିକ ଇତିହାସଭିତ୍ତିକ କରିବା କ୍ଷେତ୍ରରେ ମଧ୍ୟ ସେ ପଥପ୍ରଦର୍ଶକ ନୁହଁନ୍ତି । ଇଟାଲୀୟ ପ୍ରାକୃତିକ ଦାର୍ଶନିକମାନେ ଏହି କାର୍ଯ୍ୟ କରି ଯାଇଥିଲେ । ପ୍ରାକୃତିକ ଦୃଷ୍ଟାନ୍ତ ସଂଗ୍ରହଣ କାର୍ଯ୍ୟରେ ଓ ତାହାକୁ ବିଧିବଦ୍ଧଭାବେ ଉପସ୍ଥାପନ କରିବାରେ ମଧ୍ୟ ସେ କୌଣସି ମୌଳିକତା ପ୍ରଦର୍ଶନ କରି ନାହାନ୍ତି । ନାମୋଲ୍ଲେଖ ନଥିଲେ ସୁଦ୍ଧା ସେ ଆରିଷ୍ଟୋଟଲ୍, ପ୍ଲିନି, ଏକଷ୍ଟା, ପୋର୍ଟା, କାର୍ଡେନସ୍, ସ୍କେଲିଜର, ସେଣ୍ଡିଜ୍ ପ୍ରଭୃତିଙ୍କ ପୁସ୍ତକରୁ (୧୭) ପ୍ରାକୃତିକ ଦୃଷ୍ଟାନ୍ତ ଗୁଡ଼ିକର ସଂଗ୍ରହଣ କରିଥିଲେ ଏବଂ ସେଗୁଡ଼ିକର ଉପସ୍ଥାପନରେ କୌଣସି ଏକ ନିର୍ଦ୍ଦିଷ୍ଟ ନୀତି ଅବଲମ୍ବନ କରି ନ ଥିଲେ ।

ସମାଲୋଚକମାନଙ୍କ ଉପର୍ଯ୍ୟୁକ୍ତ ସମସ୍ତ ମତାମତକୁ ସ୍ୱୀକାର କରିଗଲେ ମଧ୍ୟ ବିଶ୍ୱର ମହା ମନୀଷୀମାନଙ୍କ ମଧ୍ୟରେ ବେକନ୍‌ଙ୍କ ସ୍ଥାନ ତଥାପି ସୁରକ୍ଷିତ ରହିବ । ସେ ଏକ ମହାନ୍ ବୈଜ୍ଞାନିକ ବା ଦାର୍ଶନିକ ନ ହୋଇ ପାରନ୍ତି, ସେ ଏକ ନିଷ୍କଳଙ୍କ ଚରିତ୍ରବାନ୍ ବ୍ୟକ୍ତି ନ ହୋଇ ପାରନ୍ତି, କିନ୍ତୁ ସେ ଯେ ଜଣେ ଉଚ୍ଚକୋଟିର ବିଦ୍ୱାନ୍ ଓ ବୁଦ୍ଧିମାନ ବ୍ୟକ୍ତି ଏଥିରେ

(୧୭) Aristole's Problems
Pliny's Natural History
Acosta's Historia natural moral de ıas Indias porta's magia naturalis
Cardanus De Substilitate and De varietate rerum
Scaliger's Exercit· adv. Card
Sandy's Travels

ମତଦ୍ୱୈଧ ନାହିଁ । ୩୧ ବର୍ଷ ବୟସରେ ବେକନ୍ ତାଙ୍କର ମଉସା ଲର୍ଡ଼ ବର୍‌ଲେ ସିସିଲ୍‌ଙ୍କୁ ପଠାଇଥିବା ଏକ ପତ୍ରରେ ଲେଖିଥିଲେ—"ମୁଁ ସମସ୍ତ ପ୍ରକାର ଜ୍ଞାନ ଆହରଣକୁ ମୋର ବୃତ୍ତିରୂପେ ଗ୍ରହଣକରି ନେଇଛି ।" ଅବସ୍ଥା ଚକ୍ରରେ ପଡ଼ି ଜୀବନର ଅଧିକାଂଶ ସମୟ ସେ ରାଜନୈତିକ ଓ ସାମାଜିକ କାର୍ଯ୍ୟରେ ହିଁ ଅତିବାହିତ କରି ଥିଲେ । ତଥାପି ଜ୍ଞାନ ଆହରଣ କ୍ଷେତ୍ରରେ ସେ ଯେ ଅସାଧାରଣ ସାଫଲ୍ୟ ଅର୍ଜନ କରିଥିଲେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ତାଙ୍କର ସିଦ୍ଧାନ୍ତ ସହିତ ଏକମତ ହୋଇ ନ ପାରିଲେ ମଧ୍ୟ ତାଙ୍କର ଜ୍ଞାନଗର୍ଭିତାରେ କାହାରି ସନ୍ଦେହ ନ ଥିଲା ।

ଜ୍ଞାନ ରାଜ୍ୟର ସର୍ବବିଧ ପ୍ରଦେଶରେ ପ୍ରବେଶ କରିବା ନିମିତ୍ତ ବେକନ୍‌ଙ୍କର ଆଗ୍ରହ ଜୀବନବ୍ୟାପୀ ଅତୁଟ ରହିଥିଲା । ରାଜନୈତିକ ଜୀବନର ଅନିଶ୍ଚିତତାଠାରୁ ଦୂରରେ ରହି କେବଳ ଜ୍ଞାନବିଜ୍ଞାନର ଅନୁଶୀଳନରେ ସେ ନିଜକୁ ନିରବଚ୍ଛିନ୍ନ ଭାବରେ ନିଯୁକ୍ତ ରଖି ପାରିଥିଲେ । ମନୁଷ୍ୟ-ସମାଜକୁ ତାଙ୍କର ଅବଦାନ ସୁନିଶ୍ଚିତଭାବେ ଆହୁରି ମହନୀୟ, ଆହୁରି କମନୀୟ, ଆହୁରି ଉପାଦେୟ, ଆହୁରି ପ୍ରଶଂସନୀୟ ହୋଇ ପାରିଥାନ୍ତା । କୌଣସି ଏକ ନିର୍ଦ୍ଦିଷ୍ଟ ବିଜ୍ଞାନ ବା କଳାରେ ବେକନ୍‌ଙ୍କଠାରୁ ଅଧିକତର ପାରଦର୍ଶିତା ଅର୍ଜନ କରିଥିବା ବ୍ୟକ୍ତିଙ୍କର ଅଭାବ ନ ଥିଲା, କିନ୍ତୁ ଯେଉଁ ଜ୍ଞାନରେ ବେକନ୍ ଅନ୍ୟମାନଙ୍କଠାରୁ ଅଧିକ ପାରଦର୍ଶିକତା ଅର୍ଜନ କରିଥିଲେ ତାହା ହେଉଛି ଜ୍ଞାନର ବିଭିନ୍ନ ବିଭାଗର ପାରସ୍ପରିକ ସମ୍ବନ୍ଧ ବିଷୟକ ଜ୍ଞାନ । ଯେଉଁ କଳାରେ ବେକନ୍ ଅଧିକତରଭାବେ ଅନୁରକ୍ତ ଥିଲେ, ତାହା କଳା ଉଦ୍ଭାବନ କରିବାର କଳା । ବେକନ୍ ତାଙ୍କ ସିଦ୍ଧାନ୍ତ ଗ୍ରହଣ କରାଇ ନେବା ନିମିତ୍ତ କୌଣସି ଯୁକ୍ତିତର୍କର ଅବତାରଣା କରୁ ନ ଥିଲେ, ବରଂ ତାଙ୍କ ରଚନାବଳୀରେ ଏକ ପ୍ରଚ୍ଛନ୍ନ ମନ୍ତବ୍ୟ ରହିଥିଲା—'ଏହା ହିଁ ମୋର ବକ୍ତବ୍ୟ ; ତୁମେ ବିଚାର କରି ଦେଖ ; ଯଦି ଉପଯୁକ୍ତ ମନେ ହୁଏ, ଗ୍ରହଣ କର ନଚେତ୍ ପରିତ୍ୟାଗ କର ।'

ଯୁକ୍ତି ତର୍କର ଅଭାବ ସତ୍ତ୍ୱେ ବେକନ୍‌ଙ୍କର ଚିନ୍ତାଧାରା ଦେଶ-ବିଦେଶର ଶିକ୍ଷିତ ସମାଜରେ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା ।

ଯୁଗ ଯୁଗର ନିଷ୍ଫଳ ଦାର୍ଶନିକ ଆଲୋଚନା ଲୋକଙ୍କ ମନରେ ବିତୃଷ୍ଣା ଜାତ କରିଥିଲା । ପ୍ରାଚୀନ ଦର୍ଶନର ଅସାରତା ଉପଲବ୍ଧ ହୋଇଥିଲେ ମଧ୍ୟ ଏକ ନୂତନ ଦର୍ଶନର ଅଭ୍ୟୁଦୟ ହୋଇ ନ ଥିଲା । ଠିକ୍ ଏହି ସମୟରେ ହିଁ ବେକନ୍ ଦର୍ଶନର ଏକ ଯୁଗୋପଯୋଗୀ ନୂତନ ଲକ୍ଷ୍ୟ ଧାର୍ଯ୍ୟ କରି ଦେଲେ ଏବଂ ଦର୍ଶନ ଫଳପ୍ରସୂ ତଥା ମାନବର କଲ୍ୟାଣକର ହେବା ନିମିତ୍ତ ଯେଉଁ ପଦ୍ଧତି ଅନୁସୃତ ହେବା ଆବଶ୍ୟକ, ତାହାର ବିଶଦ୍ ବ୍ୟାଖ୍ୟା ଉପସ୍ଥାପନ କରି ସେ ଉଦ୍ଭିଗକୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏହାହିଁ ଦର୍ଶନକୁ ବେକନ୍‌ଙ୍କ ସର୍ବଶ୍ରେଷ୍ଠ ଅବଦାନ । ଏହା ଉପେକ୍ଷଣୀୟ ନୁହେଁ ।

ବେକନ୍‌ଙ୍କର ବିଜ୍ଞାନ ସମ୍ବନ୍ଧୀୟ କାର୍ଯ୍ୟକଳାପର ମୂଲ୍ୟ ତାଙ୍କର ପରବର୍ତ୍ତୀ ବୈଜ୍ଞାନିକମାନେ ଭିନ୍ନ ଭିନ୍ନ ଭାବେ ନିରୂପଣ କରିଛନ୍ତି । ଊନବିଂଶ ଶତାବ୍ଦୀର ବ୍ରିଟିସ୍ ବୈଜ୍ଞାନିକ ସାର ଡେଭିଡ ବ୍ରଉଷ୍ଟରଙ୍କ (୧୮) ମତରେ ଯଦି ବେକନ୍‌ଙ୍କ ଆବିର୍ଭାବ ହୋଇ ନ ଥାନ୍ତା, ତେବେ ବେକନ୍‌ଙ୍କ ସମ-ସାମୟିକ ବୈଜ୍ଞାନିକ ଗାଲିଲିଓଙ୍କ ଗବେଷଣା ପ୍ରଣାଳୀ, ରଚନା ଓ କାର୍ଯ୍ୟାବଳୀ ଦ୍ୱାରା ପରବର୍ତ୍ତୀ ବୈଜ୍ଞାନିମାନେ ଅଧିକତରଭାବେ ଅନୁପ୍ରାଣିତ ହୋଇଥାନ୍ତେ । ଏତଦ୍ଦ୍ୱାରା ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଅଧିକତର ସୁଷ୍ଠୁରୂପେ ସମ୍ପନ୍ନ ହୋଇ ପାରିଥାନ୍ତା ଏବଂ ବିଜ୍ଞାନମାନଙ୍କର ପ୍ରଗତି ଅଧିକତର କ୍ଷିପ୍ର ହୋଇଥାନ୍ତା ।

ଗାଲିଲିଓଙ୍କ ଗବେଷଣା ପ୍ରଣାଳୀର ଏକ ଅପରିହାର୍ଯ୍ୟ ଅଙ୍ଗ ହେଉଛି ପ୍ରକଳ୍ପ ପ୍ରଣୟନ ; କିନ୍ତୁ ବେକନ୍ ପ୍ରକଳ୍ପ ପ୍ରଣୟନର ପକ୍ଷପାତୀ ନ ଥିଲେ । ଗାଲିଲିଓ ପ୍ରକଳ୍ପରୁ ଅବରୋହାନୁମାନ ସାହାଯ୍ୟରେ ସିଦ୍ଧାନ୍ତ ଗ୍ରହଣ କରି ତାହାର ସତ୍ୟାସତ୍ୟ ନିର୍ଣ୍ଣୟ କରିବା ନିମିତ୍ତ ପରୀକ୍ଷଣର ପ୍ରୟୋଗ କରୁଥିଲେ;

(୧୮) Sir David Brewster : vide 'Martyrs of Science"

କିନ୍ତୁ ବେକନ୍ କୌଣସି ପ୍ରକାର ପ୍ରକଳ୍ପର ବଶବର୍ତ୍ତୀ ନହୋଇ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣରୁ ହିଁ ଆରୋହାନୁମାନ ଦ୍ୱାରା ସିଦ୍ଧାନ୍ତ ଗ୍ରହଣ କରିବାକୁ ମତ ଦେଇଥିଲେ । ପ୍ରକୃତିର ରହସ୍ୟ ଭେଦ ନିମନ୍ତେ ବେକନ୍ ଗାଣିତିକ ସମାଧାନ ଉପରେ ବିଶେଷ ଗୁରୁତ୍ୱ ଅର୍ପଣ କରୁ ନ ଥିଲେ ; କିନ୍ତୁ ଗାଲିଲିଓ ପ୍ରକୃତିରୂପକ ଗ୍ରନ୍ଥ ଗାଣିତିକ ଭାଷାରେ ହିଁ ଲିଖିତ ବୋଲି ମନେ କରୁଥିଲେ । ବ୍ରଡ଼ଷ୍ଟରଙ୍କ ମତରେ ବୈଜ୍ଞାନିକ ଗବେଷଣାରେ ଗାଲିଲିଓଙ୍କ ଅନୁସୃତ ପଦ୍ଧତି ହିଁ ଯଥୋପଯୁକ୍ତ । କିନ୍ତୁ ବେକନ୍‌ଙ୍କ ହେତୁ ହିଁ ଏହି ପଦ୍ଧତିର କାର୍ଯ୍ୟକାରିତା ଉପଲବ୍‌ଧ ହେବାରେ ବିଳମ୍ବ ଘଟିଥିଲା ।

ଗାଣିତିକ ଜନ୍ ପ୍ଲେଫେଅର୍ (୧୯) ବିଜ୍ଞାନକୁ ବେକନ୍‌ଙ୍କ ଅବଦାନ ସମ୍ବନ୍ଧରେ କହିବାକୁ ଯାଇ ମତ ଦେଇଛନ୍ତି ଯେ ବେକନ୍‌ଙ୍କ ପରିସ୍ଥିତିରେ ଅବସ୍ଥାପିତ କୌଣସି ବ୍ୟକ୍ତି ବେକନ୍‌ଙ୍କ ତୁଳ୍ୟ କାର୍ଯ୍ୟ କରି ଯାଇଥିବାର ମନୁଷ୍ୟର ଜ୍ଞାନ-ବିଜ୍ଞାନର ଇତିହାସରେ ନିଦର୍ଶନ ନାହିଁ । ଯଥାର୍ଥ ବିଜ୍ଞାନର ଅଭ୍ୟୁଦୟ ଘଟି ନ ଥିବା ସମୟରେ ସେ ହିଁ ଜଣେ ଭବିଷ୍ୟଦ୍‌ବକ୍ତା ପରି ଭବିଷ୍ୟତ୍ ବିଜ୍ଞାନର ପରିକଳ୍ପନା କରି ଯାଇଥିଲେ ।

ପ୍ରବାଦ ଅଛି ଯେ ବେକନ୍‌ଙ୍କ ଚିକିତ୍ସକ ବୈଜ୍ଞାନିକ ହାରଭେ କହିଥିଲେ—"ବେକନ୍ ବିଜ୍ଞାନ ସମ୍ବନ୍ଧରେ ଲର୍ଡ ଚ୍ୟାନ୍‌ସେଲର୍ ଭାବେ ହିଁ ଲେଖି ଯାଇଛନ୍ତି" । ଏହି ଉକ୍ତିର ସମର୍ଥନରେ କୁହାଯାଇ ପାରେ ଯେ ବେକନ୍‌ଙ୍କୁ ଜଣେ ବୈଜ୍ଞାନିକ ହିସାବରେ ଗ୍ରହଣ କରି ବିଜ୍ଞାନକୁ ତାହାଙ୍କ ଅବଦାନର ମୂଲ୍ୟ ନିରୂପଣ କରିବା ଦ୍ୱାରା ତାହାଙ୍କ ପ୍ରତି ଅବିଚାର ହେବ । ସେ ଜଣେ ଅଭିଜ୍ଞ ଓ ଦାୟିତ୍ୱସମ୍ପନ୍ନ ରାଜନୀତିଜ୍ଞ ହିସାବରେ ହିଁ ବିଜ୍ଞାନକୁ ନିଜର ଅବଦାନ ଦେଇ ଯାଇଛନ୍ତି । ଦେଶ ଓ ସମାଜର ମଙ୍ଗଳ ବିଷୟ ବିସ୍ମୃତ ହୋଇ ସେ ବିଜ୍ଞାନ କଥା ଚିନ୍ତା କରି ନାହାନ୍ତି ; କିନ୍ତୁ ଏହି ପରିପ୍ରେକ୍ଷୀରେ ହିଁ ବିଜ୍ଞାନର ଭୂମିକା କିପରି ଗୁରୁତ୍ୱପୂର୍ଣ୍ଣ ତାହା ହିଁ ପ୍ରଦର୍ଶନ କରି ଯାଇଛନ୍ତି ।

---

(୧୯) John Playfair, quoted by J. G. Crowther in his book "Francis Bacon"

କୌଣସି ଏକ ନିର୍ଦ୍ଦିଷ୍ଟ ବିଜ୍ଞାନର ନିର୍ଦ୍ଦିଷ୍ଟ ସମସ୍ୟାର ସମାଧାନରେ ପାରଦର୍ଶିତା ଅର୍ଜନ କରିଥିବା ବୈଜ୍ଞାନିକମାନଙ୍କର ସଂଖ୍ୟା ଅନେକ। ବେକନ୍‌ଙ୍କ ସ୍ଥାନ ଏମାନଙ୍କ ମଧ୍ୟରେ ନାହିଁ, କାରଣ ସେ ଏ ପ୍ରକାର ବୈଜ୍ଞାନିକ ନଥିଲେ। କିନ୍ତୁ ସେ ଥିଲେ ବିଜ୍ଞାନର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ଏବଂ ଏହି କାର୍ଯ୍ୟ ସମ୍ପାଦନରେ ସେ ଅଭୂତପୂର୍ବ କୃତିତ୍ୱ ମଧ୍ୟ ଅର୍ଜନ କରି ଯାଇଛନ୍ତି।

ଇଂଲଣ୍ଡର ରୟେଲ ସୋସାଇଟିର ବୈଜ୍ଞାନିକ ଗବେଷଣା ପ୍ରାଥମିକ ଅବସ୍ଥାରେ ବେକନ୍‌ଙ୍କ ଠାରୁ ହିଁ ପ୍ରେରଣା ଲାଭ କରିଥିଲା ଏବଂ ବହୁବର୍ଷ ଧରି ୟୁରୋପର ବିଭିନ୍ନ ରାଜ୍ୟରେ ବିଶେଷତଃ ଫ୍ରାନ୍‌ସରେ ତାଙ୍କର ପ୍ରଭାବ ଅକ୍ଷୁର୍ଣ୍ଣ ରହିଥିଲା। ସପ୍ତଦଶ ଶତାବ୍ଦୀର ଇଂଲଣ୍ଡ ଏବଂ ଫ୍ରାନ୍‌ସରେ ବୈଜ୍ଞାନିକ ଗବେଷଣା ବେକନ୍‌ଙ୍କ ସୃଚିତ ପ୍ରଣାଳୀରେ ହିଁ ପରିଚାଳିତ ହେଉଥିଲା। ପରବର୍ତ୍ତୀକାଳରେ ଅବଶ୍ୟ ବେକନ୍‌ଙ୍କ ଦ୍ୱାରା ଅବହେଳିତ ଗାଣିତିକ ଆଲୋଚନା ବୈଜ୍ଞାନିକ ଗବେଷଣାରେ ପ୍ରାଧାନ୍ୟ ଲାଭ କରିଥିଲା; କିନ୍ତୁ ଏବେ ବେକନ୍‌ଙ୍କ ବୈଜ୍ଞାନିକ ଚିନ୍ତାଧାରାର ଅନ୍ୟ ଏକ ଦିଗ ପ୍ରତି ବୈଜ୍ଞାନିକମାନେ ସ୍ୱତଃ ଆକୃଷ୍ଟ ହୋଇଛନ୍ତି। ଦଳବଦ୍ଧ ଭାବେ ବୈଜ୍ଞାନିକ ଗବେଷଣା କରିବା ଏବଂ ଭିନ୍ନ ଭିନ୍ନ କ୍ଷେତ୍ରରେ ବୈଜ୍ଞାନିକମାନଙ୍କର ଉଦ୍ଭାବନକୁ ବିନିଯୋଗ କରି ମାନବର କଲ୍ୟାଣ କଲେ ବିଭିନ୍ନ ପ୍ରକାର ବୈଜ୍ଞାନିକ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ବେକନ୍ ପରିକଳ୍ପନା କରିଥିଲେ (୨୦)। ବିଜ୍ଞାନର ଉପଯୋଗିତା ସମ୍ବନ୍ଧରେ ବେକନ୍ ଯେଉଁ ସ୍ୱପ୍ନ

(୨୦) ଦୁଇଟି ଆଧୁନିକ ପୁସ୍ତକରେ ବେକନ୍‌ଙ୍କ କାର୍ଯ୍ୟକଳାପର ଏହି ଦିଗପ୍ରତି ଦୃଷ୍ଟି ଆକର୍ଷଣ କରାଯାଇଅଛି। ସେ ଦୁଇଟି ହେଉଛି—

(୧) Francis Bacon ; Philosopher of Industrial Science by Benjamin Farringtion published in 1951.

(୨) Francis Bacon : The First Statesman of Science by J. G. Crowther published in 1960.

ଦେଖିଥିଲେ, ଆଜି ବହୁ ପରିମାଣରେ ତାହା ସଫଳ ହୋଇଛି । ସହଯୋଗ-ମୂଳକ ବୈଜ୍ଞାନିକ ଗବେଷଣା ଦ୍ୱାରା ଆଜିକାଲି ବହୁ ନୂତନ ଉଦ୍ଭାବନ କରାଯାଇ ପାରିଛି । ବିଜ୍ଞାନର ସଫଳ ନିୟୋଜନ ଦ୍ୱାରା ବହୁ ନୂତନ ଶିଳ୍ପ ପ୍ରତିଷ୍ଠା କରି ଯାଇଛି । ଏହି କ୍ଷେତ୍ରରେ ବିଶେଷତଃ ରାସାୟନିକ ଓ ପାରମାଣବିକ ଶିଳ୍ପ ଅଭୂତପୂର୍ବ କୃତିତ୍ୱ ହାସଲ କରି ପାରିଛି । ବିଜ୍ଞାନର ଅଭିବୃଦ୍ଧି ସାଧନ ସହିତ ତାହାର ପ୍ରୟୋଗାତ୍ମକ ବ୍ୟବହାର କରାଯିବା ହେତୁ ସାଧାରଣ ଜନତା ଯେ ବହୁ ଭାବରେ ଉପକୃତ ହେଉଛନ୍ତି ଏକଥା ବ୍ୟକ୍ତ କରିବା ନିଷ୍ପ୍ରୟୋଜନ ।

କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିଜେ ସମ୍ପାଦନ କରିବା ଯେପରି ଏକ ମହତ୍ତ୍ୱ କାର୍ଯ୍ୟ, ଅନ୍ୟମାନଙ୍କୁ ଉଦ୍‌ବୁଦ୍ଧ କରି ସେହି କାର୍ଯ୍ୟ କରାଇ ନେବା ମଧ୍ୟ ସେହିପରି ଏକ ମହତ୍ତ୍ୱ କାର୍ଯ୍ୟ । କିନ୍ତୁ ଶେଷୋକ୍ତ କାର୍ଯ୍ୟଦ୍ୱାରା ହିଁ ପରିମାଣତଃ ଅଧିକ ସୁଫଳ ମିଳିଥାଏ । ବେକନ୍ ସ୍ୱୀୟ ଉଦ୍ଭାବନ ଦ୍ୱାରା ବିଜ୍ଞାନକୁ ସମୃଦ୍ଧ କରି ନାହାନ୍ତି ସତ, କିନ୍ତୁ ଏଥିନିମିତ୍ତ ଅନେକଙ୍କୁ ପ୍ରେରଣା ଦେବା ଦ୍ୱାରା ବିଜ୍ଞାନ ଯେ ସୁସମୃଦ୍ଧ ହୋଇଛି ଏଥିରେ ସନ୍ଦେହ ନାହିଁ । ବେକନ୍‌ଙ୍କ କାର୍ଯ୍ୟ ଏଥେନ୍‌ସର ଖଞ୍ଜକବି ଟିରଟେଅସ (୨୧)ଙ୍କ କାର୍ଯ୍ୟ ସହିତ ତୁଳନୀୟ ବୋଲି ଡିକେଷ୍ଟରହୁଇସ୍ (୨୨) ମତ ପ୍ରଦାନ କରିଛନ୍ତି । ଏଥେନ୍‌ସର ଅଧିବାସୀମାନଙ୍କୁ ଯୁଦ୍ଧରେ ସ୍ପାର୍ଟାକୁ ସାହାଯ୍ୟ କରିବାର ଆବଶ୍ୟକତା ପଡ଼ିବାରୁ ସେମାନେ ସୈନ୍ୟ ପଠାଇବା ପରିବର୍ତ୍ତେ ସେଠାକୁ ତାଙ୍କର ଖଞ୍ଜକବି ଟିରଟେଅସ ଙ୍କୁ ପ୍ରେରଣ କଲେ । ଅବଶ୍ୟ କବିଙ୍କର ଯୁଦ୍ଧ କରିବାର କ୍ଷମତା ଆଦୌ ନ ଥିଲା; କିନ୍ତୁ ସେ ତାଙ୍କର ବୀର ରସାତ୍ମକ

(୨୧) Tyrtaeus

(୨୨) Dijksterhuis—Vide his book "Mechanization of the World picture"

ଯୁଦ୍ଧକଳବତା ଦ୍ୱାରା ସୈନ୍ୟମାନଙ୍କୁ ଏପରି ଭାବରେ ଉଦ୍‌ବୁଦ୍ଧ କଲେ ଯେ ପରିଶେଷରେ ସ୍ପାର୍ଟାର ସୈନ୍ୟମାନେ ହିଁ ଜୟଯୁକ୍ତ ହେଲେ । ସପ୍ତଦଶ ଶତାବ୍ଦୀର ବିଜ୍ଞାନ ଜଗତରେ ବେକନ୍ ହିଁ ଟିରଟେଅସଙ୍କ ଭୂମିକା କାର୍ଯ୍ୟ କରିଥିଲେ । ତେଣୁ ବେକନ୍‌ଙ୍କ ଅବଦାନ କଦାପି ଉପେକ୍ଷଣୀୟ ହୋଇ ନ ପାରେ ।

---